# ଅନଙ୍ଗ ମଞ୍ଜରୀ



କବି ଶ୍ରୀ ଚିନ୍ତାମଣି ମହାନ୍ତିଙ୍କ ଦ୍ୱାରା

ପ୍ରଣୀତ ଓ ପ୍ରକାଶିତ

ମୁ: ଦଲ୍ଲିଅଙ୍ଗ

ପୋ: ଫକୀର୍‌ବାଦ

ଜି: କଟକ

ପ୍ରଥମ ସଂସ୍କରଣ—୧,୦୦୦

—୧୯୬୧—

ମୂଲ୍ୟ—ଟ ୧.୨୫ ନ: ପ:

# —ସୂଚୀପତ୍ର—





# KALINGA BHARATI

(Incorporating the Utkal Chhatra Sahitya Samaj)

Kalinga's Premier Academy of
Art and Literature.

( Registered under Act XXI of 1960 )

Head Office :
Kalinga Bharati Bhaban,
Cuttack-2
Dated 22. 7. 60

Bichhanda Charan Patnaik
Founder President.

I have great pleasure to certify that I known Sri Chintamani Mohanty who was grown old in rendering valuable service to the Oriya Literature is now fifty three years of age and has no stable means of livele-hood. Pateronage to him at this stage of his life will be the most well come thing. I recommend his deserving case to the favourable notice of the Ministry of Scientific Research and cultural Affairs.

B. C. Patnaik
Founder President,
Kalinga Bharati
The Utkal Chhatra Samaj.

# PANDIT NILAKANTHA DAS
Speaker,
ORISSA LEGISLATIVE ASSEMBLY.

ଭୁବନେଶ୍ୱର—ତା ୨୩ । ୭ । ୬୦

କଟକ ଜିଲ୍ଲା ତେଲଙ୍ଗବଜାର ଅଂଚଳ ନିବାସୀ କବି ଶ୍ରୀଯୁକ୍ତ ଚନ୍ଦ୍ରାମଣି ମହାନ୍ତି ମୋ ସଂଗେ ଦେଖା କରିବାକୁ ଆସି ତାଙ୍କ ନିଜ ଲିଖିତ କବିତା ସମ୍ବନ୍ଧରେ କେତେକ କଥା କହିଲେ ଓ କେତେକ କଥା ପଢ଼ିଲେ । ଦେଖିଲି କବିତାରେ ପଦବିନ୍ୟାସ ମଧୁର ହୋଇଛି । ଆଦର୍ଶ ବିଷୟରେ ଆଜିକାଲି ହୁଏତ ପ୍ରାଚୀନ ଧର୍ମ ଦର୍ଶନ ଓ ରାଜ ପରିବାର ତଥା ଇତର ଜନ ସମ୍ବନ୍ଧୀୟ ଲେଖା ଯୁବକମାନେ ପସନ୍ଦ କରୁନାହାନ୍ତି । ତଥାପି ଦବାଗରର ସଂଘର୍ଷଣରେ ଯେପରି ସକାଳୁ ଆଂଧାର ଗୁଣ୍ଡ-ଗୁଣ୍ଡ ନଥାଏ ଓ ଅଲ୍ପ ମାତ୍ର ମଧ୍ୟ ମାତ୍ର ନଥାଏ । ସେହିପରି ଅମର କବି ଓ ଲେଖକମାନେ ପୂର୍ବର ପରମ୍ପରା ଓ ଧାରାକୁ ଅବଲଂବନ କରି ରହୁଛଂତି । ରହିବା ଅନୁଚିତ ନୁହେଁ । ସେଥିରେ ହିଁ ଆମ ସାହିତ୍ୟ ଉନ୍ନତ ହୋଇଆସିଛି । ଆଦର୍ଶ ସ୍ୱତଂତ୍ର କଥା । ସେହି ହିସାବରେ ଶ୍ରୀଯୁକ୍ତ ମହାନ୍ତିଙ୍କ ଲେଖାକୁ ମୁଁ ପସନ୍ଦ କରୁଛି ।

୨୩ । ୭ । ୬୦ ନୀଳକଂଠ ଦାସ

---

ପ୍ରାଚୀନ ରୀତିରେ କାବ୍ୟ କବିତା ରଚନା ଓଡ଼ିଆ ସାହିତ୍ୟର ଅନ୍ତଃସଲିଳା ଫଲ୍‌ଗୁ ପରି ଏବେ ମଧ୍ୟ ପ୍ରବାହିତ । ଏବେ ମଧ୍ୟ ତାହା ଜନ ସାହିତ୍ୟକୁ ଜୀବନୀଶକ୍ତି ଯୋଗାଉଛି । ଶ୍ରୀଯୁକ୍ତ ଚନ୍ଦ୍ରାମଣି ମହାନ୍ତି ସେହି ସାହିତ୍ୟ ସାଧନାର ଜଣେ ନୀରବ ସାଧକ । ଏ ପର୍ଯ୍ୟନ୍ତ ସେ ଏଗାର ଖଣ୍ଡ କବିତା ଗ୍ରନ୍ଥ ପ୍ରକାଶ କରିଛନ୍ତି । ପ୍ରାଚୀନ ଛନ୍ଦ, ଅଳଂକାର, ଉପମା ଆଦି ବ୍ୟବହାର କରି ସେ ଓଡ଼ିଆ ସାହିତ୍ୟର ଐତିହ୍ୟକୁ ବଞ୍ଚାଇ ରଖିଛନ୍ତି । ତାହାଙ୍କ ରଚନାବଳୀ ମଧ୍ୟରେ "ଅନଙ୍ଗ ମଞ୍ଜରୀ" ଏକ ଜାଲନଦ୍ଧ କାବ୍ୟ । ତାହା ବର୍ତ୍ତମାନ ଯନ୍ତ୍ରସ୍ଥ । ତାଙ୍କ ସାଧନାର ଉତ୍ତରୋତ୍ତର ସିଦ୍ଧି ଫଳରେ ଉତ୍କଳ ଭାରତୀଙ୍କ ମନ୍ଦିର ଝଂକୃତ ହେଉ, ଏତିକି କେବଳ କାମନା ।

କଟକ—୧୮-୭-୬୦ କାଳନ୍ଦୀଚରଣ ପାଣିଗ୍ରାହୀ

SHRI GAURI KUMAR BRAHMA, M. A.
Secretary. Orissa Sahitya Akademy
New Capital, Bhubaneswar.

ଅନଙ୍ଗ ମଞ୍ଜରୀର କିୟଦଂଶ ଉପରେ ଦୃଷ୍ଟିପାତ କରିବାର ସୁଯୋଗ ଲାଭ କରି କବି ଶ୍ରୀ ଚନ୍ଦ୍ରମଣି ମହାନ୍ତିଙ୍କୁ ଧନ୍ୟବାଦ ଦେଉଅଛି । ତାହା ଆଗରୁ ତାଙ୍କର କେତୋଟି କାବ୍ୟ ପ୍ରକାଶ ପାଇଛି । ଏହି ପୁସ୍ତକଟି ଏବେ ମୁଦ୍ରସ୍ଥ । ପ୍ରାଚୀନ ଧରଣ କାବ୍ୟ ଲେଖା ଯୁଗ ଏବେ ମଧ୍ୟ ଅସ୍ତ ପ୍ରକାଶ କରିବାକୁ ଉଦ୍ୟତ କିଏ ଅଭିନବ ଭଙ୍ଗୀରେ । ନବ ପ୍ରକାଶିତ ଚେତନାର କାବ୍ୟ ତୁଳନାରେ ଏ କାବ୍ୟର ବିଚାର ବିଳାସ ଉପଯୋଗର । କବିଙ୍କର ଉଦ୍ୟମ ସାର୍ଥକ ହେଉ ଓ ପ୍ରାଚୀନର ପଥରେ ବର୍ତ୍ତମାନର ସମାଜ ପ୍ରତି ସଚେତନ ରହି ସେ ଅଗ୍ରଗାମୀ ହୁଅନ୍ତୁ ଏହା ହିଁ ଆମର କାମନା ।

୨୦ । ୭ । ୬୦ — ଗୌରୀକୁମାର ବ୍ରହ୍ମା

---

Sarala Mahabharata Sankalana Samiti

Rastrabhasha Premises — Rastrabhasha Road Cuttack-I

Rai Bahadur Dr. Artaballabha Mahanti,
M. A. D. Litt.

Date 21. 9. 60

କବି ଶ୍ରୀ ଚନ୍ଦ୍ରମଣି ମହାନ୍ତିଙ୍କର କୃତ "ଅନଙ୍ଗ ମଞ୍ଜରୀ" କାବ୍ୟ ପାଠ କରି ଆନନ୍ଦିତ ହେଲି । ତାହାଙ୍କ ଶବ୍ଦବିନ୍ୟାସ, ଯୋଜନା ଗୁରୁତା, କଳ୍ପନା ବିଳାସ ଓ ବର୍ଣ୍ଣନାର ଔଚିତ୍ୟ ତଥା ଭାବର ସରସତାରେ କାବ୍ୟଟି ସୁମଣ୍ଡିତ ହୋଇଅଛି । କବି ଚନ୍ଦ୍ରମଣି ଜଣେ ସାଧକ । ସେ ଦେବୀ ବୀଣାପାଣିଙ୍କର ଉପାସନାରେ ନିଜର ଜୀବନକୁ ନିୟୋଜିତ କରିଅଛନ୍ତି ଏବଂ ଭବିଷ୍ୟତରେ ସେ ସରସ୍ୱତୀଙ୍କୁ ସୁମନାମଣ୍ଡିତ କରିବେ ବୋଲି ଆମର ଆଶା । ମୁଁ ଆଶାକରେ ଏହି କାବ୍ୟଟି ତାର ବିଶେଷତ୍ୱ ବଳରେ ସର୍ବସାଧାରଣରେ ଆଦୃତ ହେବ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି

ସାମନ୍ତ ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତିଙ୍କ 'ଅନଙ୍ଗ ମଞ୍ଜରୀ' କାବ୍ୟ ପାଠ କରିବାର ସୁଯୋଗ ପାଇ ନିଜକୁ ଗୌରବାନ୍ୱିତ ମନେ କଲି । ନିର୍ଝରିଣୀ ଭଳି ସ୍ରୋତ ପ୍ରବାହ ଗୁଡ଼ିଏ । ଭୂମି ମସୃଣ ହେଉ ବା ବନ୍ଧୁର ହେଉ ସେଥିପ୍ରତି ଭ୍ରୂକ୍ଷେପ ନ ଥାଏ । କାବ୍ୟକାର କଳ୍ପନା ଗୁଡ଼ିଏ, ସ୍ୱପ୍ନ ଗୁଡ଼ିଏ, ଭାବଚିନ୍ତାଧାର ଗୁଡ଼ିଏ । ଲିଖନ ହେଉ ଅଟ୍ଟାଳିକା ବା ସ୍ଥାପନ ଧରଣର ନୂଆ ଲେଖକ ପକ୍ଷେ ତାହା ମୂଲ୍ୟବାନ ।

କବି ଚିନ୍ତାମଣିଙ୍କର 'ଅନଙ୍ଗ ମଞ୍ଜରୀ' କାବ୍ୟଟି ନୂଆ ଧାରା ଓ ଶୈଳୀର ମାଧୁର୍ଯ୍ୟର ସ୍ୱାକ୍ଷର ଦେବାକୁ ଚେଷ୍ଟିଛି । ତଥାପି କବି ଆଧୁନିକ ଯୁଗର ପ୍ରଭାବ ଏଡ଼ି ପାରି ନାହାନ୍ତି ।

କାବ୍ୟକାର ଚିନ୍ତାମଣିଙ୍କର ଲେଖନୀ ଜାଗ୍ରତ ରହୁ ଓ କାବ୍ୟ-ଭାର ଭଣ୍ଡାରର ଉପାଧିରେ ଭୂଷିତ ହୁଅନ୍ତୁ ଏହାହିଁ ମୋର କାମନା ।

ଶ୍ରୀ ବେଣୁଧର ପ୍ରଧାନ

ତା ୧୩ । ୨ । ୬୧ ରିଖ — ପ୍ରିନ୍ସିପାଲ, କେନ୍ଦ୍ରାପଡ଼ା କଲେଜ, କଟକ

## ORDER

Dated Kendrapara the 1st December 1960

(1) A sum of Rs20/- (Rupees twenty only) is hereby sanctioned to Sri Chintamani Mohanty writer of Oriya Literature, Vill. Malianga, P.o. Fakirabad, Via. Kendrapara, Dist. Cuttack for publication of his book "Ananga Manjari".

(2) The grant will be met from the allotment of Rs100/- placed at my disposal under the head "Demand No. 9-25 General Admn. Misc. Discretionary grant" for the year 1960-61.

G. L. N. Murty
Sub Divisional Officer,
Kendrapara

Memo No. 4196
Kendrapara
Sub-divisional Office
Dt, 9. 12. 60

# ALL ORISSA
# WOMEN CONFERENCE

## ନିଖିଳୋତ୍କଳ ମହିଳା ସମ୍ମିଳନୀ

ଦେବୀ ଚୌଧୁରୀ ଷ୍ଟ୍ରୀଟ୍, ପୁରୀ—ତା ୨୮-୧୧-୫୦

ଓଡ଼ିଶାର ସ୍ୱନାମଧନ୍ୟ କବି ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତିଙ୍କର "ଅନଙ୍ଗ ମଞ୍ଜରୀ"ରୁ କିଛି ଅଂଶ ପାଠକରି ଅସୀମ ଆନନ୍ଦ ଲଭିଲି। କବିଙ୍କର କାବ୍ୟ ପ୍ରାଚୀନ ଛନ୍ଦ ଦ୍ୱାରା ସୁସଜ୍ଜିତ। ଯାହାକି ଆଜି ଆମର ସାହିତ୍ୟ ଜଗତରେ ଏକ ପ୍ରକାର ବିରଳ କହିଲେ ଚଳେ। ଆଜିର ସାହିତ୍ୟ ମଧ୍ୟରେ ଆଧୁନିକ ସାହିତ୍ୟ ଆଦରଣୀୟ, ପ୍ରାଚୀନ ସାହିତ୍ୟ ଦୁର୍ବୋଧ୍ୟ ବୋଲି ଆମ ଦେଶର ପିଲାମାନଙ୍କ ପକ୍ଷରେ ଉପେକ୍ଷିତ ହେଉଛି। କିନ୍ତୁ ଆମର ଚିନ୍ତାମଣି ବାବୁଙ୍କର "ଅନଙ୍ଗ ମଞ୍ଜରୀ" କାବ୍ୟ ପ୍ରାଚୀନ ହେଲେହେଁ ମୁଁ କହିବି ସାହିତ୍ୟ ଜଗତରେ ଏହା ଅତୁଳନୀୟ ଅଭିନବ ସାମଗ୍ରୀ।

କବି ବିଭିନ୍ନ ଛନ୍ଦ, ରାଗ ରାଗିଣୀ ଦ୍ୱାରା କାବ୍ୟଟିକୁ ଅଳଂକୃତ କରିଅଛନ୍ତି। ଓଡ଼ିଆ ଲେଖକର ପ୍ରାଚୀନ ଶୈଳୀ ଫୁଟି ଉଠିଛି, ଏହି କାବ୍ୟର ଛନ୍ଦେଛନ୍ଦେ। କାବ୍ୟଟି ସାହିତ୍ୟଜଗତରେ ଉଜ୍ଜ୍ୱଳତାରକା, କବିଙ୍କ ସାହିତ୍ୟ ପ୍ରେମୀଙ୍କର ଉଜ୍ଜ୍ୱଳ ଦର୍ପଣ। ଏହା କହିଲେ ବୋଧହୁଏ ଅତ୍ୟୁକ୍ତି ହେବ ନାହିଁ। ଆଜି କବିଶ୍ରେଷ୍ଠ ଚିନ୍ତାମଣି ବାବୁ, ଯେଉଁ କାବ୍ୟ 'ବ୍ରଜବାଳା' 'ପ୍ରଭାତ-କୁସୁମ' ପ୍ରଭୃତି ରଚନା କରିଯାଇଛନ୍ତି, ତାହା କବି ଜୀବନର ଅମୂଲ୍ୟକୁସୁମ। 'ଅନଙ୍ଗମଞ୍ଜରୀ' ନିଶ୍ଚୟ ଆମର କଳା ଏବଂ ସାହିତ୍ୟ ପ୍ରେମୀମାନଙ୍କ ନିକଟରେ ଆଦରଣୀୟ ବସ୍ତୁ ରୂପେ ପ୍ରତିଷ୍ଠା ଲାଭ କରିବ ଏହାହିଁ କାମ୍ୟ।

ବିନୀତା

ସୁନ୍ଦରମଣି ପଟ୍ଟନାୟକ

# ପୁଷ୍ପାଞ୍ଜଳି

୬ ୨

[ ମୋର ଜନ୍ମ ଜୟନ୍ତୀ ପାଣ୍ଡୁଲିପିରୁ ]

ଜୟ ଜୟ ଜୟ ମାତ ! ଦଶଭୁଜା- ନତାଶୟ ମୂର୍ଦ୍ଧ୍ନି ଶ୍ରୀଚରଣ ପୂଜା ।
ସନ୍ତାନ ବନ୍ଦନ କରନ୍ତୁ ଅନୁକ୍ଷଣ- ଶ୍ରୀଚରଣେ ସୁତ ମାଗୁଛି ଶରଣ । ୭
ମୁକ୍ତବେଣୀ ପଦେ ଅଶେଷ ପ୍ରଣାମ- ଭଜୁ ଏହି ମନ ସେହି ସ୍ୱଚ୍ଛ ନାମ ।
ଗୁରୁ କରଚନ୍ଦ୍ର ଶସ୍ତ୍ର ସୁଶୋଭିତା- ତେଣୁ ସର୍ବମାତା ଅଟ ବନ୍ଦିତା ୮
ଲକ୍ଷ୍ମୀମନ୍ଦ୍ରି ! ଭକ୍ତେ ବସାଇଛ ହାଟ- ଅନ୍ଧକୁ ଯେ ଅନ୍ଧ ଦେଖାଉଛ ବାଟ ।
ଭେଟେଭେଟେ ନେଲେ ହେବ ଦେଖିଂ ଟିଙ୍କି ଦେବୀ-ଶ୍ରୀଦେଳେ ଦର୍ଶି ଭୋ ! ଦ୍ୱୈତାନୁଭବରସା ୯
ନତଂ ଚିଦେଶ୍ୱରୀ ସତ ଚିତ୍ତ ଦିଅ- ନିତ୍ୟାନନ୍ଦ ପଦେ ଜୀବ ତଥି ନିଅ ।
କୃପାସିନ୍ଧୁ ପ୍ରେମ ତରଙ୍ଗେ ଭଙ୍ଗ- ପ୍ରାଣ-ଦୂର୍ବାଦଳ ଦିଅ ମା ଲହର । ୧୦



( ମୋର ଭକ୍ତ ଲୋକର ପାଣ୍ଡୁଲିପିରୁ )

[ Swp. 21. 8. 58 ] Friday Usa

ଅନନ୍ତ ଜୀବ ବିଶ୍ୱାସ କୃପାସିନ୍ଧୁ ବୋଲି-
ବେଦମାତା ଅଦ୍ୟନ୍ତେ ବନ୍ଦୁଛନ୍ତି ଖୋଲି ।
ସପ୍ତସ୍ୱରେ ବାଣୀ ବୀଣା ଗାଉଛନ୍ତି ସଦା
ଶ୍ରୀପଦ ସେବନ୍ତି ଲକ୍ଷ୍ମୀ କମଳା ଶୁଭଦା ।
ଭକ୍ତ ବୁଲୁଛନ୍ତି ତାହା ଦେବର୍ଷି ନାରଦ
କୃପାସିନ୍ଧୁ ପଦ କିଏ କରିବ ରଦ ? ୫
କୃଷ୍ଣବେଣୀ ଅଞ୍ଜନର ରଞ୍ଜନ ଭୂଷା
ଭୃଙ୍ଗେଶ୍ୱର ଓଘନଗଲି ଦୁଃଶୀଳ ଦୁଃଶା ।
ଚଞ୍ଚଳ ଅଞ୍ଚଳସ୍ୱାଦା ଭକ୍ତି ନେଇ
ସେ ପାଞ୍ଚାଳୀ ଭାବେ ଭାସ ଥିଲେ ଯେ ଦେଇ ।
ଏମନ୍ତ ଶ୍ରୀ ନାରାୟଣ ପଦେ ଜୁହାର
ତେ ଭକ୍ତିର ତାଙ୍କ କୃପା ପ୍ରୀତି ସମ୍ଭାର । ୧୧



# ଅବଦାନ ପତ୍ର

## ଶ୍ରୀଯୁକ୍ତ ଶ୍ରୀ ପୁରନ୍ଦର ସାହୁ



ରମ୍ୟଦର୍ଶନ, ସୌଜନ୍ୟାଧାର, ଶ୍ରୀଯୁକ୍ତ ପୁରନ୍ଦର ସାହୁ, ମହୋଦୟ
ଓଲକଣା·····ଉଦାରହୃଦୟେଷୁ

ମହାଶୟ !

ସୌଜନ୍ୟବୃନ୍ଦ ଓ ସାଧବ ସନ୍ତାନମାନେ ସତ୍‌କବିତା ଓ କବି-ମାନଙ୍କର ଚିରକାଳ ଆଶ୍ରୟ ହୋଇଥିଲେ । ମୁଁ ସେହି ପୂର୍ବାଚରିତ ପ୍ରଥାକୁ, ଅନୁସରଣ କରି, ତତ୍‌ସଦୃଶ ଆପଣଙ୍କର, କାବ୍ୟ କବିତା ପ୍ରତି ଆଦର ଥିବା ଜାଣି ଓ ଶିକ୍ଷାର ଉନ୍ନତି କଲେ ଅତୀତର ଉଦାରତାର ପରିଚୟ ପାଇ ଆଜି ଏହି କଳ୍ପନା କୁଞ୍ଜ ପ୍ରସୂତା, ଅନଙ୍ଗ ମଞ୍ଜରୀ କାବ୍ୟ କୁସୁମ ହାରଟି ଆପଣଙ୍କୁ ଅର୍ପଣ କଲି । ସାଦରେ ଗ୍ରହଣ କରି ମୋତେ କୃତାର୍ଥ କରନ୍ତୁ ।

<table><tr><td>ନୂତନ ବର୍ଷ<br>ତା୧ । ୧ । ୬୨ ପୌଷ ବ ୧୮ ନ<br>ବୋକାଭିଷେକ ପୂର୍ଣ୍ଣିମା, ରବିବାର</td><td>ବିନୀତ<br>ଶ୍ରୀ ଚିନ୍ତାମଣି ମହାନ୍ତି</td></tr></table>

# ମୁଖବନ୍ଧ

କବି ଶ୍ରୀ ଚିନ୍ତାମଣି ମହାନ୍ତି ଆଜି ପ୍ରାଦେଶିକ ଓ କେନ୍ଦ୍ର ସରକାରୀ ମହଲଠାରୁ ଆରମ୍ଭ କରି ଉତ୍କଳୀୟ ସାହିତ୍ୟସେବୀ ଜନସାଧାରଣଙ୍କ ପର୍ଯ୍ୟନ୍ତ ସର୍ବଜନ ସୁପରିଚିତ । ଓଡ଼ିଆ ସାହିତ୍ୟାକାଶରେ ଯେତେଗୁଡ଼ିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ କିରଣ ପ୍ରଦାନ କରି ଲବ୍ଧପ୍ରତିଷ୍ଠ ହୋଇଛନ୍ତି ଏବଂ ଯେଉଁମାନେ ବର୍ତ୍ତମାନ ପ୍ରଭା ବିସ୍ତାର କରୁଛନ୍ତି, ସେମାନଙ୍କ ମଧ୍ୟରେ ଆମ୍ଭ କେନ୍ଦ୍ରାପଡ଼ା ଅଞ୍ଚଳର ପୁଣ୍ୟ ଭୂମିରେ ଜନ୍ମଲାଭ କରିଥିବା କବି—ଚିନ୍ତାମଣି ଯେ ଅନ୍ୟତମ ଏହା କହିବା ବାହୁଲ୍ୟ ମାତ୍ର । କବି ହିସାବରେ ସେ ଲବ୍ଧପ୍ରତିଷ୍ଠ । ତାଙ୍କର ଏ ପର୍ଯ୍ୟନ୍ତ ୧୨ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି ଓ ୨୫।୩୦ ପ୍ରକାର ଭଲ ଭଲ ପାଣ୍ଡୁଲିପି ପାଖରେ ଅଛି, ଅର୍ଥ ଅଭାବରୁ ସେମାନ ପ୍ରକାଶ ପାଇ ପାରୁନାହିଁ । ତାଙ୍କର ପ୍ରକାଶିତ କାବ୍ୟ କବିତାକୁ ଅନୁମୋଦନ କରି ଶିକ୍ଷା ବିଭାଗର ଅଭିଜ୍ଞ ଉପାଧ୍ୟାୟମାନେ ଓ ତୁଙ୍ଗ ସାହିତ୍ୟିକ ୰ ଶଶିଭୂଷଣ ରାୟ, ୰ ବିଚ୍ଛନ୍ଦଚରଣ ପଟ୍ଟନାୟକ, ଶ୍ରୀ ଗୌରୀକୁମାର ବ୍ରହ୍ମା, ଶ୍ରୀ ନୀଳକଣ୍ଠ ଦାସ, ଶ୍ରୀ ମାୟାଧର ମାନସିଂହ, ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ଇତ୍ୟାଦି ଅନେକ ବିଷୟ ଲେଖିଛନ୍ତି । ଏମାନଙ୍କ ସହିତ ମୋର ତୁଳନା ଅସମ୍ଭବ । କିନ୍ତୁ ସଂପ୍ରତି ଅନଙ୍ଗମଞ୍ଜରୀର ମୁଖବନ୍ଧ ଲେଖିବାପାଇଁ ସେ ଯେ ମୋତେ କାହିଁକି ନିର୍ଦ୍ଦେଶ ଦେଲେ ତା ମୁଁ ନିଜେ ମଧ୍ୟ କହି ପାରିବି ନାହିଁ । କବି ମୋର ପିତୃସ୍ଥାନୀୟ ତେଣୁ ତାଙ୍କ ନିର୍ଦ୍ଦେଶକୁ ମୁଁ ଆଦେଶ ବୋଲି ମାନି ନେଇଛି । ସେ ଆଦେଶ ମୋତେ ପାଳନ କରିବାକୁ ହେବ । ନଚେତ୍ ଏହା ପୂଜ୍ୟ ପୂଜାର ବ୍ୟତିକ୍ରମ ବୋଲି ପରିଗଣିତ ହେବ । କବି ସ୍ୱପ୍ରତିଭାର ପ୍ରଚାର ପାଇଁ ମୋଠାରୁ ସୁପାରିଶ ବା ସ୍ତାବକତା ବାଞ୍ଛା କରନ୍ତି ଏହା ଭାବିବା ଭ୍ରମାତ୍ମକ । କାରଣ ଚନ୍ଦ୍ର ସୂର୍ଯ୍ୟ ଶୋଭାର ବିକାଶ ପାଇଁ

ତାରକାର ସାହଚର୍ଯ୍ୟ ଲୋଡ଼ୁନାହିଁ । ଏହି ବ୍ୟକ୍ତିଙ୍କର କବି ପ୍ରତିଭା ଅପଣା ସ୍ୱର୍ଗ ବିକାଶ ଲଭିକରିଛି । "କୁସୁମ ପରଶେ ଫୁଟ କିସ୍ତରେ" ଉକ୍ତିର ସାର୍ଥକତା ରକ୍ଷା କରିବା ପାଇଁ ବର୍ତ୍ତମାନ ମୁଁ ଯାଉଅଛି । ଏ ଦୃଷ୍ଟିରୁ ପାଠକ ପାଠିକାମାନେ ବିଚାର କରିବେ । କାବ୍ୟାଲୋଚନା ପୂର୍ବରୁ କବିଙ୍କର ଜୀବନୀର କିଞ୍ଚିତ ଆଲୋଚନା ସମୀଚୀନ ମନେ କରୁଛି ।

ଜନ୍ମ :— ନୈସର୍ଗିକ ଶୋଭାପୂର୍ଣ୍ଣ ଜଙ୍ଗଲର ଏକ ଅଖ୍ୟାତ ପଲ୍ଲୀଗ୍ରାମ କଟକ ଜିଲ୍ଲା କେନ୍ଦ୍ରାପଡ଼ା ଅନ୍ତର୍ଗତ ଡେରାବିଶ ଗ୍ରୁଟର୍ ସାପିଲ ପଲ୍ଲୀଅଙ୍ଗ ଗ୍ରାମର ଏକ ସମ୍ଭ୍ରାନ୍ତ କରଣ ପରିବାରରେ ଧର୍ମ-ଭୀରୁ, ସରଳ ବିଶ୍ୱାସୀ ୰ ଅର୍ତ୍ତବନ୍ଧୁ ମହାନ୍ତିଙ୍କ ଔରସରୁ ୧୯୦୭ ମସିହା ନଭେମ୍ବର ୨୯ତାରିଖ ଶୁକ୍ରବାର କବିଙ୍କ ଜନ୍ମ । ତୁଳସୀ ଦୁଇ ପତ୍ରରୁ ବାସେ । ପିଲାଦିନରୁ କବିଙ୍କର ମନ କବିତା ଦିଗରେ ପ୍ରଧାବିତ ହୋଇଥିଲା । ପଲ୍ଲୀର ଶାନ୍ତ, ସ୍ନିଗ୍ଧ, ନୈସର୍ଗିକ ଶୋଭା ପସର ମଧ୍ୟରେ କବିଙ୍କର ଜୀବନ ଅତିବାହିତ ହେଉଥିଲା । ତେଣୁ କବିଙ୍କ ରଚନାର ଅଧିକାଂଶ ସ୍ଥାନରେ ପ୍ରକୃତି ଚିତ୍ରଣ ପରିଦୃଷ୍ଟ ହୁଏ ।

ଶିକ୍ଷା :— କବିଙ୍କର ଆର୍ଥିକ ସ୍ୱଚ୍ଛଳତା ନଥିବା ହେତୁ ସେ ଉଚ୍ଚଶିକ୍ଷା ପାଇ ପାରିଲେ ନାହିଁ । Grey ସାହେବଙ୍କ ଭାଷାରେ Chill penury repressed the noblerage and froze the genial current of the soul.

ଦାରିଦ୍ର୍ୟ ଦେଲା ତାଙ୍କ ମହତ୍ତ୍ୱ ସାରି, ନରେ କାହିଁ ଅଉ ଏତେ ଉଗାଳି

ଉଚ୍ଚଶିକ୍ଷା ପାଇଥିଲେ କବିଙ୍କର ପ୍ରତିଭା ସୁଦୂର ପ୍ରସାରୀ ହୋଇ ପାରିଥାଆନ୍ତା ।

ଚରିତ୍ର :— କବିଙ୍କର ବ୍ୟକ୍ତିଗତ ଚରିତ୍ର ଅତି ନିର୍ମଳ, ଶିଶୁ ସୁଲଭ ସରଳତା ଏବଂ ସ୍ଥବିର ସୁଲଭ ଗାମ୍ଭୀର୍ଯ୍ୟ ଉଭୟ ତାଙ୍କ

ଠାରେ ତୃଷ୍ଣା ହୁଏ । ମୋ ବିଗ୍ରହରେ କୁଷ୍ଠ ଲତା ବା ଦୂଷିତ ଅନ୍ତର ବ୍ୟକ୍ତିମାନଙ୍କ ପ୍ରତି ବାଣୀ କଦାପି ଅନୁକମ୍ପାମୟୀ ହେବେ ନାହିଁ ।

ଏହାପରେ କାବ୍ୟ ଉପରେ କିଛି ଆଲୋକପାତ କରାଯାଉ । କବି ତାଙ୍କ ରଚନାବଳୀ ମଧ୍ୟରେ ୩୮ଖଣ୍ଡ କାବ୍ୟ ରଚନା କରିଅଛନ୍ତି । ସଂସ୍କୃତ "ଅନଙ୍ଗ ମଞ୍ଜରୀ" ଖଣ୍ଡିକ ଭଗବାନଙ୍କର ଅସୀମ ଦୟାରୁ ଲୋକ ଲୋଚନକୁ ଆସିଅଛି । ଏହାରି ଉପରେ କିଞ୍ଚିତ ଆଲୋଚନା କରାଯାଉ ।

ବିଷୟବସ୍ତୁ ଓ ବର୍ଣ୍ଣନା ଗୁରୁତ୍ୱ :— ବିଷୟ ( Plot )ର ଚମତ୍କାରିତା ପାଠକ ମନକୁ ମୁଗ୍ଧ କରେ । କାବ୍ୟ ନାୟିକା ଅନଙ୍ଗ ମଞ୍ଜରୀକୁ କେନ୍ଦ୍ର କରି ସମସ୍ତ ବିଷୟ ରଚିତ । ନାୟକ କଳିଙ୍ଗାଧିପତି "ନୀଳକମଳ" ଉଭୟଙ୍କର ମିଳନ ଓ ବିପ୍ରଲମ୍ଭ କାବ୍ୟରେ ପ୍ରଦର୍ଶିତ ହୋଇଅଛି । ବିଷୟବସ୍ତୁ ଓ ବର୍ଣ୍ଣନା ଗୁରୁତ୍ୱ ଉଭୟ ଦିଗରୁ ଦେଖିବାକୁ ଗଲେ ଏହା ପ୍ରାଚୀନତା ଓ ଆଧୁନିକତାର ଏକ ମଧୁର ସମନ୍ୱୟ । ଅନ୍ୟ କବିମାନଙ୍କ ପରି ନାୟିକାର ବାଲ୍ୟ, ପୌଗଣ୍ଡ, ଯୌବନ ବର୍ଣ୍ଣନାରେ କାଳ କ୍ଷୟ ନକରି କବି ନୂତନ ଭାବରେ ବିଷୟ ବସ୍ତୁର ଆଲୋଚନା କରିଛନ୍ତି । ଯଦ୍ଦ୍ୱାରା ପଠନ କ୍ଲାନ୍ତି ନିବାରିତ ହୋଇଛି । ସ୍ୱୟମ୍ବରର ଯାତ୍ରା ବର୍ଣ୍ଣନା, ଗନ୍ଧର୍ବ କର୍ତ୍ତୃକ ରାଜକୁମାରଙ୍କର ଅପହରଣ, ବନଦେବୀଙ୍କ ଆବିର୍ଭାବ ଏବଂ ଅମର ପୁରର ଦେବସଭା ଇତ୍ୟାଦି ବର୍ଣ୍ଣନା କବିଙ୍କର କଳ୍ପନାର ପ୍ରକୃଷ୍ଟ ଦୃଷ୍ଟାନ୍ତ । ଏ ସବୁଥିରେ ବର୍ଣ୍ଣନାଗୁରୁତ୍ୱ ଅତି ଉଚ୍ଚକୋଟୀର ବୋଲି ପ୍ରତୀୟମାନ ହେଲା ।

ଉଦାହରଣ:— କୁବେର ପ୍ରଭାବ ମତେ ଗୁରୁ ବୃହସ୍ପତି
ହୋଇଥିଲେ ସଭାପତି ସେହି ସଭା ପୀଠେ

× × ×

ଏ ସମସ୍ତେ ହିଭ୍ର ମଧ୍ୟେ ପ୍ରଚେଶିଲା ଅଛି
ଅମଳ ଗୀତିକା ନାମେ ଦୈନିକ ପତ୍ରିକା

ପ୍ରକୃତି ବର୍ଣ୍ଣନା :— ଉକ୍ତ କାବ୍ୟରେ ଅଧିକାଂଶ ସ୍ଥାନରେ ମନୋରମ ନୈସର୍ଗିକ ଚିତ୍ର ପରିଲକ୍ଷିତ ହୁଏ ।

ଉ:—ନୀଳବେଣୀ ଜଳାଧାର, ମଧ୍ୟରେ ସାରସବୋଲ;
ଶବଦାନ୍ଥାନ୍ତି ସର ସର ସାରସକୁଞ୍ଜ
ସରସ ମୃଣାଳ ଖାଇ, ସୁରଙ୍ଗ ପକ୍ଷ ହଲାଇ,
କରୁଥାନ୍ତି ଭଙ୍ଗୀ ହୋଇ ପୁଞ୍ଜକୁ ପୁଞ୍ଜ
ସରଗ ଶୋଭାକୁ ସବସେ,
କହେ କାନ୍ତ ଅନା ତହିଁ ସଖେରକ ଆଗେ ।

କବିଙ୍କର ପ୍ରକୃତ ସମ୍ବେଦନାଶୀଳ । ଅନଙ୍ଗମଞ୍ଜରୀଙ୍କର ଶଙ୍ଖା ଲୋପ ସମ୍ବନ୍ଧରେ ପ୍ରକୃତ ସମବେଦନା ଜଣାଇ ବ୍ୟାକୁଳିତ ହୋଇ ଉଠିଛି, କବି ଶୋକ ଜର୍ଜରିତ କଣ୍ଠରେ ଗାଇ ଉଠିଛନ୍ତି— "ଗଲେ ଗଜପୁର ଗନ୍ଧର୍ବ ରଥେ, ଚନ୍ଦ୍ରମା ଲୁଚିଲେ ବାରୁଣୀ ପଥେ, ତାରକା ବିଷାଦେ ମୁଦି ନୟନ, ମୁଦି ତେଜ ଭଜି ନିଜ ଅୟନ, ସେ ଜେମା ବିଷାଦରେ ଦୁଃଖୀ ଯେ, ଉତ୍ତନ୍ତ୍ରୀ ନାୟିକା ଦିଗଙ୍ଗଣେ ରହି ହୋଇଲେ ମଳିନମୁଖୀ ଯେ ॥ ଏହି ପ୍ରକୃତିଚିତ୍ରତା କବିଙ୍କର ଉତ୍କର୍ଷତ୍ୱ ।

ଅଶ୍ଳୀଳତା ବର୍ଜ୍ଜନ :— ପ୍ରାଚୀନ ଏବଂ ଅର୍ବାଚୀନ ଉଭୟ କାଳର କବିମାନଙ୍କ ମଧ୍ୟରୁ କେତେକ ଶୃଙ୍ଗାର ରସର ପରିସ୍ଫୁରଣ କରିବାକୁ ଯାଇଁ ଅଶ୍ଳୀଳତାର ଆଶ୍ରୟ ନେଇଛନ୍ତି । କିନ୍ତୁ ଉକ୍ତ କବିଙ୍କ ଲେଖାରେ ଉଚ୍ଛୃଙ୍ଖଳତା କୌଣସି ସ୍ଥାନରେ ଦୃଷ୍ଟ ହେଉ ନାହିଁ । ଅତି ଭଦ୍ର ଓ ସଂଯତଭାବରେ ଶୃଙ୍ଗାରରସର ଚିତ୍ର କବି ପରିବେଷଣ କରିଛନ୍ତି, ଏହା ତାଙ୍କର ଅଧିକା ଗୁଣ ।

ଦେଶାତ୍ମବୋଧକତା :— ସ୍ୱଦେଶ ପ୍ରତି କବିଙ୍କର ଅନେକ ଯେବାନର ତୃଷ୍ଣା ସ୍ପୃହା । କବି ସ୍ୱଦେଶ ପ୍ରୀତି ତ୍ୟାଗ କରି ନ ପାରି "ଅନଙ୍ଗ ମଞ୍ଜରୀ"ଙ୍କ କଳିଙ୍ଗର ରାଜକୁମାରଙ୍କ ସହ ବିବାହ ବନ୍ଧନରେ ଯୁକ୍ତ କରାଇଛନ୍ତି । ସଖୀ ମୁଖରେ କଳିଙ୍ଗର ଯେଉଁ ବର୍ଣ୍ଣନା କରିଛନ୍ତି ତାହାର ମାଧୁର୍ଯ୍ୟ ଭାଷାରେ ବ୍ୟକ୍ତ କରିହେବ ନାହିଁ ।

ଉଦାହରଣ – ଗଜପତି ଯାହିଁ କଳିଙ୍ଗ ପ୍ରସିଦ୍ଧ × ×
କଳିଙ୍ଗ କାରଣ ନୁହଇ ଅଳପ, ତାହା ଯେ ବର୍ଣ୍ଣନାତୀତ । ×
ରତ୍ନଗିରି ଗର୍ଭେ ଥିଲା ଏତେ ଶିଳ୍ପ କଳା × ×
ଭୁବନେଶ୍ୱର ଉତ୍କଳର ଗୌରବ ସ୍ମାରକ × ×

ଉପରୋକ୍ତ ସ୍ଥଳରେ କବିଙ୍କର ଦେଶ ପ୍ରୀତି ଦୃଷ୍ଟ ହୋଇଛନ୍ତି ।

ଆଲଙ୍କାରିକ ଗୁରୁତ୍ୱ :— ରସର ପରିସ୍ଫୁରଣ ପାଇଁ ପଦ୍ୟ ମଧ୍ୟରେ ଅଳଙ୍କାରର ସଂଯୋଜନା ଅପରିହାର୍ଯ୍ୟ । "ଅନଙ୍ଗ ମଞ୍ଜରୀ"ର ଅନେକ ସ୍ଥାନ ଅର୍ଥାଳଙ୍କାର ଓ ଶବ୍ଦାଳଙ୍କାର ଦ୍ୱାରା ପୁଷ୍ଟ ହୋଇଛନ୍ତି ।

ଯଥା — ନାଥ ! ଝଳିଥିଲା ଉଜ୍ଜ୍ୱଳ ତାଙ୍କର ଲଲାଟେ ସିନ୍ଦୂର ବିନ୍ଦୁ
ନୀଳକୁନ୍ତଳେ କି ବସିଛି କରିଥିଲେ ପୂର୍ଣ୍ଣିମା ପ୍ରଦୋଷ ଇନ୍ଦୁ ॥
( ଉତ୍ପ୍ରେକ୍ଷା )

ପ୍ରେମ ମନ ବନ ବିଟପୀ ସବୁ ଝାଉଁଳି ଗଲା,
ସୁହାସ ଅଧର ସରସୀ ସବୁ ଧଉଳ କଲା । ( ରୂପକ )
ବାସର ତୃଷ୍ଣାଯୁ ଅଟଇ ଯେ ଅଳି ଭ୍ରମର ବନ ନିବାସ
ବାସନ୍ତୀ ଚନ୍ଦ୍ରିକା ବିମୋହନେ ଅସି ହୋଇଲା ବିପଦ ବାସ
( ସିଂହାବଲୋକନ ) (ପୃ ୯୩, ୯୪, ୯୫)

ଉପରୋକ୍ତ ପ୍ରକାରେ କାବ୍ୟର ବହୁସ୍ଥାନ ଅଳଙ୍କାର ଦ୍ୱାରା ପୁଷ୍ଟ ଓ ବର୍ଦ୍ଧିତ ହୋଇ କାବ୍ୟର ଶ୍ରୀ ସମ୍ପାଦନ ସହ ପାଠକମାନଙ୍କର ଆନନ୍ଦ ବର୍ଦ୍ଧନରେ ସାହାଯ୍ୟ କରୁଛି ।

ଏ ସମୟେ ହସ୍ତୁ ମଧେ ଧ୍ରଟେବ ଗଲା ଅଗ୍ନି
ଅମଲ ଗୀତରା ନାମେ ହୈମନ୍ତ ପତ୍ରିକା

ପ୍ରକୃତ ବର୍ଣ୍ଣନା :— ଉକ୍ତ କାବ୍ୟରେ ଅଧିକାଂଶ ସ୍ଥାନରେ ମନୋରମ ନୈସର୍ଗ ଚିତ୍ର ପରିଲକ୍ଷିତ ହୁଏ ।

ଉ:—ନୀଳବେଣୀ ଜଳାଧାର, ମଧ୍ୟରେ ସାରସବାର;
ଶବ୍ଦ କରୁଥାନ୍ତି ସର ସର ସାରସକୁଞ୍ଜି
ସରସ ମୃଣାଳ ଖାଇ, ସୁରଙ୍ଗ ପକ୍ଷ ହଲାଇ,
କରୁଥାନ୍ତି ଭଙ୍ଗୀ ହୋଇ ପୁଞ୍ଜିକୁ ପୁଞ୍ଜି
ସରଗ ଶୋଭାକୁ ସବରେ,
କହେ କାନ୍ତ ଅନା ତହିଁ ସରେକ ଆଗେ ।

କବିଙ୍କର ପ୍ରକୃତ ସମବେଦନାଶୀଳ । ଅନଙ୍ଗମଞ୍ଜରୀଙ୍କର ହଜ୍ଜା ଲୋପ ସମ୍ବନ୍ଧରେ ପ୍ରକୃତ ସମବେଦନା ଜଣାଇ ବ୍ୟାକୁଳତା ହୋଇ ଉଠିଛି, କବି ଶୋକ ଜର୍ଜରିତ କଣ୍ଠରେ ଗାଇ ଉଠିଛନ୍ତି— "ଗଲେ ଗଜଚୁନ୍ଦ ଗନ୍ଧର୍ବ ରଥେ;ଚନ୍ଦ୍ରମା ଲୁଚିଲେ ବାରୁଣୀ ପଥେ, ତାରକା ବିଷାଦେ ମୁଦି ନୟନ, ମୁଦ ଡେକା ଭଜ ନିଜ ଅୟନ,ସେ କେମା ବିଷାଦରେ ଦୁଃଖୀ ଯେ, ଦିଗ୍‌ଦନ୍ତୀ ନାୟିକା ଦିଗନ୍ତୋଣେ ମୁହିଁ ହୋଇଲେ ମଳିନମୁଖୀ ଯେ ॥ ଏହି ପ୍ରକୃତଶବଦତା କବିଙ୍କର ବୈଶିଷ୍ଟ୍ୟ ।

ଅଶ୍ଳୀଳତା ବର୍ଜନ :— ପ୍ରାଚୀନ ଏବଂ ଅର୍ବାଚୀନ ଉଭୟ କାଳର କବିମାନଙ୍କ ମଧ୍ୟରୁ କେତେକ ଶୃଙ୍ଗାର ରସର ପରିପ୍ରକାଶ କରିବାକୁ ଯାଇଁ ଅଶ୍ଳୀଳତାର ଆଶ୍ରୟ ନିଅନ୍ତି । କିନ୍ତୁ ଉକ୍ତ କବିଙ୍କ ଛେଦରେ ଉଚ୍ଛୃଙ୍ଖଳତା କୌଣସି ସ୍ଥାନରେ ଦୃଷ୍ଟ ହେଲ ନାହିଁ । ଅତି ଭଦ୍ର ଓ ସଂଯତଭାବରେ ଶୃଙ୍ଗାରରସର ଚିତ୍ର କବି ପରିବେଷଣ କରିଛନ୍ତି, ଏହା ତାଙ୍କର ଅଧିକା ଗୁଣ ।

ଦେଶାତ୍ମବୋଧକତା :— ସ୍ୱଦେଶ ପ୍ରୀତି କାବ୍ୟର ଅନେକ କ୍ଷେତ୍ରରେ ଦୃଷ୍ଟ ହୁଏ । କବି ସ୍ୱଦେଶ ପ୍ରୀତି ତ୍ୟାଗ କରି ନ ପାରି "ଅନଙ୍ଗ ମଞ୍ଜରୀ"ଙ୍କୁ କଳିଙ୍ଗର ରାଜକୁମାରଙ୍କ ସହ ବିବାହ ବନ୍ଧନରେ ଯୁକ୍ତ କରାଇଛନ୍ତି । ସଖୀ ମୁଖରେ କଳିଙ୍ଗର ଯେଉଁ ବର୍ଣ୍ଣନା କରିଛନ୍ତି ତାହାର ମାତୃଭୂମି ଭାଷାରେ ବ୍ୟକ୍ତ କରିହେବ ନାହିଁ ।

ଉଦାହରଣ - ଗଜଦନ୍ତ ପାଇଁ କଳିଙ୍ଗ ପ୍ରସିଦ୍ଧ × ×
କଳିଙ୍ଗ ଭାରତ ନୁହଇ ଅଲଗା, ତାହା ଯେ ବର୍ଣ୍ଣନାତୀତ । ×
ଭାରତୀର ଗର୍ଭେ ଥାଇ ଏତେ ଶିଳ୍ପ କଳା × ×
ହୁଅନ୍ତା ଉତ୍କଳର ଗୌରବ ସ୍ମାରକ × ×

ଉପରୋକ୍ତ ସ୍ଥଳରେ କବିଙ୍କର ଦେଶ ପ୍ରୀତି ଦୃଷ୍ଟ ହୋଇଛନ୍ତି ।।

ଆଲଙ୍କାରିକ ଗୁଣ :— ରସର ପରିସ୍ଫୁରଣ ପାଇଁ ପଦ ମଧ୍ୟରେ ଅଲଙ୍କାରର ସଂଯୋଜନା ଅପରିହାର୍ଯ୍ୟ । "ଅନଙ୍ଗ ମଞ୍ଜରୀ"ର ଅନେକ ସ୍ଥାନ ଅର୍ଥାଲଙ୍କାର ଓ ଶବ୍ଦାଳଙ୍କାର ଦ୍ୱାରା ପୁଷ୍ଟ ହୋଇଛନ୍ତି ।

ଯଥା — ନାଥ ! ଝଲୁଥିଲା ଉଜ୍ଜ୍ୱଳ ତାଙ୍କର ଲଲାଟେ ସିନ୍ଦୂର ବିନ୍ଦୁ
ନୀଳକୁମୁଦେ କି ବସିଛି କରିଥିଲେ ପୂର୍ଣ୍ଣିମା ପ୍ରଦୋଷ ଇନ୍ଦୁ ।।
( ଉତ୍ପ୍ରେକ୍ଷା )

ପ୍ରେମ ମନ ବନ ବିଟପୀ ସବୁ ଝାଉଁଳି ଗଲା,
ସୁହାସ ଅଧର ସରସୀ ସବୁ ଧଉଳ କଲା । ( ରୂପକ )
ବାସର ତୃଷାର୍ତ୍ତ ଅଟଇ ଯେ ଅଳି ଭ୍ରମର ବନ ନିବାସ
ବାସନ୍ତୀ ଚନ୍ଦ୍ରିକା ବନମାଧବେ ଅସି ହୋଇଲା ବିପଦ ବାସ
( ସିଂହାବଲୋକନ ) (ପୃ ୯୩, ୯୪, ୯୫)

ଉପରୋକ୍ତ ପ୍ରକାରେ କାବ୍ୟରେ ବହୁସ୍ଥାନ ଅଲଙ୍କାର ଦ୍ୱାରା ପୁଷ୍ଟ ଓ ବର୍ଦ୍ଧିତ ହୋଇ କାବ୍ୟର ଶ୍ରୀ ସମ୍ପାଦନ ସହ ପାଠକମାନଙ୍କର ଆନନ୍ଦ ବର୍ଦ୍ଧନରେ ସାହାଯ୍ୟ କରୁଛି ।

ମଧ୍ୟରେ କବି ଶନ୍ତ୍ରାମଣି ଅନ୍ୟତମ । ଅଜର ସୂଗ ପ୍ରତି ଲକ୍ଷ କରି ସେ ଏହି ଅନଙ୍ଗ ମଞ୍ଜରୀର ଦେବ ହସ୍ତ ୧୧ ପୃଷ୍ଠାରେ ଲେଖିଛନ୍ତି— "ସାହିତ୍ୟ କଳାଗାହାଡ଼ ଦେବ ଅଜ କିଏ ? "

ତାଙ୍କ ଲେଖାରେ ଉତ୍କଳର ସଂସ୍କୃତି, କଳାକୃତି ଓ ନାଗସ୍ତ୍ରୀ ପ୍ରତିବମ୍ବିତ ହୋଇଛି । ଉତ୍କଳୀୟ ସାହିତ୍ୟ ସେବୀ ଜନତାଙ୍କ ନିକଟରେ ସେ ଏଥିପାଇଁ ଅବିସ୍ମରଣୀୟ ରହିବେ । ଅନଙ୍ଗ ମଞ୍ଜରୀ ଉତ୍କଳ ଭାରତୀଙ୍କ ଉଦ୍ୟାନର ଏକ ପ୍ରସ୍ଫୁଟିତ ସୌରଭମୟ ସୁମନ । ଏହାର ଗୁଣାବଳୀର ବର୍ଣ୍ଣନା କରିବା ମୋ ପରି ଅବାଚୀନ ପକ୍ଷରେ ଅସମ୍ଭବ ।

ଶ୍ରୀ ମାୟାଧର ମାନସିଂହଙ୍କ ପରି ମୁଁ ମଧ୍ୟ କହୁଛି ଯେ ଉତ୍କଳ ଜନନୀ ଆଜି ଦ୍ୱିତୀୟ ଚନ୍ଦ୍ରମଣିଙ୍କୁ ପାଇ ଧନ୍ୟା । ଶେଷରେ ପରମ ପିତାଙ୍କ ନିକଟରେ ପ୍ରାର୍ଥନା, ସେ ଅମର କବିଙ୍କୁ ଶତାୟୁ କରନ୍ତୁ ଏବଂ କବି ଉତ୍କଳ ସାହିତ୍ୟକୁ ତାଙ୍କର ମହିମାପୂ ଦାନ ଦେଇ ଯାଆନ୍ତୁ । ଇମସ୍ତୁ ବଂ !

ଉତ୍କଳ ଭାରତୀ ବରପୁତ୍ରେ
ଶ୍ରୀ ବାଚସ୍ପତୟେ ନମଃ

ତା ୨୭-୨-୬୧ — ସାହିତ୍ୟ ଭୂଷଣ
ଗୁଣ୍ଡା — ଶ୍ରୀ ସଦାନନ୍ଦ ମିଶ୍ର



# ଓଁ ନମୋ ଭଗବତେ ବାସୁଦେବାୟ

## ମନ୍ତବ୍ୟ

ଅନାଦି ଅନନ୍ତ ଜଗତ ! କେବା ଭିନ୍ନତା, ଏପଣ ଭିନ୍ନତା ଓ ମନୋମାଳିନ୍ୟ ଦେଖୁନା, ସବୁ ଜାଣି ପାରନ୍ତି ଓ ସବୁ ଦେଖି ପାରନ୍ତି । ସେଦିନ ହଠାତ୍ ସ୍ୱପ୍ନରେ ତାଙ୍କର ମଧୁ ... ରଙ୍ଗର ମୁକ୍ତ କୁଞ୍ଚିତ କେଶ ପ୍ରସାରଣ କରି ବିଜନ ଆଡ଼େ ଧୀରେ ଧୀରେ ଧାଇଁ ଚାଲିଗଲେ କରୁଥିଲେ । କିଛି ସମୟ ପରେ ପ୍ରାଚୀ ଦିଗ୍‌ବଳୟରେ କୁମୁଦବନ୍ଧୁଙ୍କର ମୋହନ ମୂର୍ତ୍ତି ଦେଖା-ଦେଲା । ମୁଁ ବସିଥିଲି କଳିନୀ କୁଞ୍ଜର ସବୁଜ ତୃଣ ଭୂମି । ତା'ପରେ ଆପଣ ସବୁ ଜାଣନ୍ତି । ଭାବୁଥାଏ ମୁଁ ଭବ ଓ ଭବଧାର କଥା । ମନ ସ୍ୱଭାବେ ଚଞ୍ଚଳ । କେତେ କଥା ଭାବେ, କେତେ କଥା ଛାଡ଼େ । ଆଗ ଦେଖାଗଲା ମାନବର ଯେ ପର୍ଯ୍ୟନ୍ତ ଧନ ଆଉ ମାନ ବୃଦ୍ଧିର ଆଶା ଥିବ ସେ ପର୍ଯ୍ୟନ୍ତ ସେ ଜଗତରେ ବା ସମାଜ ଆଗରେ ସତ, ହିତକଥା କହି ପାରିବ ନାହିଁ । ଧନ ଓ ମାନ ମାନବକୁ ତଳ ଆଡ଼କୁ ବହୁତ ସ୍ରୋତରେ ଅନେକ ସମୟରେ ନେଇ ଯାଇ ଥାଏ । ସେଥିପାଇଁ ଭାରତଯୁଦ୍ଧ ଶେଷରେ କୁନ୍ତୀ ଭଗବାନ ଶ୍ରୀକୃଷ୍ଣଙ୍କୁ କହିଥିଲେ—"ହେ ଜଗଦ୍‌ଗୁରୁ ! ମୁଁ ଯେପରି ଦୁଃଖରେ ଥିଲି ସେହିପରି ଥାଏ । ଏହା ବହୁ ବିଜ୍ଞ ପାଠକ ପାଠିକା ଜାଣିଥିବେ । ଆଉ ଗୋଟିଏ ବଙ୍ଗଳା ଭାଷାର ଉଦାହରଣ—"ତାବତ ବିନୟୀ ନମ୍ର ହୋଇଥାକେ ନର ଯାବତ ନା ମାନମୟୀ ଲକ୍ଷ୍ମୀ ଆସେ ଘର ।"

ଭବ ଓ ଭବତା ଭିତ୍ତି ସାହାଯ୍ୟ— ଏହା ପୂର୍ବେ ରାଜବଂଶରେ ଦେଖା ଦେଇଥିଲା । ବହୁତ ରାଜା ଏପରିକି ଯେ କେହି ସାନ ବଡ଼ କବିଙ୍କୁ ଜାଗିର ପ୍ରଭୃତି ଦେଇ ତାହାଙ୍କର ସକଳ ଅଭାବ ଦୂର କରୁଥିଲେ ଓ ସକଳ କବିତା ପ୍ରକାଶର ଦାୟିତ୍ୱ ମଧ୍ୟ ନେଉଥିଲେ । ନକ୍ତ ଭାରତରେ ମୁଁ ଭୁକ୍ତ ଭୋଗୀ । ଆମର ଆଳି ରାଜା ଶ୍ରୀ ଶ୍ରୀ ଚନ୍ଦ୍ରଚୂଡ଼ ଦେବ ମୋତେ ବଡ଼ ଆଦର କରନ୍ତି । ଏପରିକି ତାଙ୍କ ସାହାଯ୍ୟରେ ଗତ ୧୯୫୦ ମସିହାରେ ସପରିବାରେ ମୁଁ କାଶୀ, ଗୟା, ଅଯୋଧ୍ୟା ପର୍ଯ୍ୟନ୍ତ ତୀର୍ଥ ଭ୍ରମଣ ଆନନ୍ଦରେ କରି ପାରିଥିଲି ।

ସତପୁରୁଷଙ୍କ କଥାରୁ ମନେପଡ଼େ ଯାଏ ମହାରାଜା ଶ୍ରୀ ଶ୍ରୀ ରାଜେନ୍ଦ୍ର-ନାରାୟଣ ସିଂହ ଦେଓଙ୍କ କଥା, ତାଙ୍କର ଅଦ୍ୱିତୀୟ ପ୍ରାର୍ଥନା ସ୍ୱର୍ଗଭବନରୁ ମୋର ଅନଙ୍ଗ ମଞ୍ଜରୀ ପରିଭ୍ରମଣ କରିବାକୁ ଯାଇଥିଲା । ଶ୍ରଦ୍ଧାମୂର୍ତ୍ତେ ବର୍ଷ ଦିନ ଅବସ୍ଥାନ କରି ତା୧୬-୮-୧୯୫୬ରେ ୧୬୬ନମ୍ବର ଘଟିରେ ଫେରି ଆସିଛି ।

ସାହିତ୍ୟ ଓ ସାହିତ୍ୟ ଲେଖକଙ୍କର କଥା:— ପ୍ରଥମ କହିବାକୁଯିବ ଯେଉଁଥି କଉଖସି ହେଲ କବି ଓ କବିତା ବିଷୟରେ କେତେକ ଜାଣିବାର କଥା ସଂଗ୍ରହକରି ଆମ ଉତ୍କଳର ଜଣେ ପ୍ରବୀଣଅଧ୍ୟାପକ ନଟବର ସାମନ୍ତରାୟ (ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍ ଦର୍ଶନ) ନାମକ ଖଣ୍ଡିଏ ପୁସ୍ତକ ଲେଖି ଅଛନ୍ତି ।

ବିଷୟରେ ଅଲଟର କହୁଛି, ବର୍ତ୍ତମାନ ସମାଜ କେତେକ ଅଂଶ କବି ଓ କବିତାଙ୍କୁ କେତେ ପ୍ରକାର ନାମ କରଣ କରଛନ୍ତି ଯଥା:- ପ୍ରାଚୀନ ମଧ୍ୟମିକ, ଆଧୁନିକ, ସବୁଜ ଆଦି; ହଁ; ତା ହବାରକଥା, କିନ୍ତୁ ଭୁଲନାହିଁ ପ୍ରକୃତି ସଦା ପରିବର୍ତ୍ତନ ହୁଏ; ସବୁ ବଦଳି ଯାଉଛି ଗୋଟିଏ ପୁରୁଣା କଥା ଅଛି ସେକାଳର କାନର ସୁନା, ପେଡ଼ିରକନା, ବର୍ତ୍ତମାନେ ରୂପାନ୍ତର । ସବୁ ସେହିପରି ଜାଣ୍ଠ ପାଠକେ ବୁଝିବେ । ମନେପଡ଼େ ପୂର୍ବେ ଆର୍ଯ୍ୟ ଋଷିକୁଳ ଓ ତାଙ୍କ ଶିଷ୍ୟ ମାନଙ୍କର ଏପରି ଶିକ୍ଷା, ସାଧନା ବା ଯୋଗଶକ୍ତି ଥିଲା ଯାହାକି ଇଚ୍ଛା କଲେମାନେ ସକଳ ପୁର ଖବର ଆଣି ପାରୁଥିଲେ ଓ ପରିବେଷଣ କରି ପାରୁଥିଲେ ନିଜେ ଓ କେତେକ ରାଜବଂଶୀ ସ୍ୱଦଳ କଳ ଅନନ୍ତପୁରରେ ପରି ଭ୍ରମଣ କରି ଫେରି ଆସି ପାରୁଥିଲେ । ଏପରି ଅସାଧ୍ୟକୁ ସାଧନ କରୁଥିଲେ ଯୋଗ ସୂତ୍ରେ । ଯୋଗ ବଡ଼ କଠିନ ଅଟେ । ଯୋଗ ସାଧନ କରିବାକୁ ଗଲେ ମନର ଖୁବ୍ ସ୍ଥିରତା ଆବଶ୍ୟକ । ସମସ୍ତେ ମଧ୍ୟ ଦରକାର । ମନର ସ୍ଥିରତା ଆସେ ନାନା ବ୍ୟସନ ଓ ବାସନାରୁ ରହିତ ହେଲେ ।

ବର୍ତ୍ତମାନ ବ୍ୟସନ ବାସନା ଏତେ ବଢ଼ିଯାଇଛି ଯେ, ମାନବକୁ କଥା କହିବାକୁ ବେଳ ନାହିଁ । ମାନବ ଯେତେ ବେଳେ ଅସଂଯତ ହୋଇ ତାହାର ଅଧୀନ ହୋଇଛି ତାକୁ ପୂରଣ କରିବାକୁ ଯାଇଁ ଅହରହ ନାନା କର୍ମରେ

ବାସ୍ତ ଓ ଶାନ୍ତ ହେତୁ ତାଙ୍କ ମନସ୍ଥିର କରିବାକୁ ଶକ୍ତି ଓ ସମୟ ନାହିଁ । ସେ ହେଉଛି କଠିନ ସଙ୍ଗୀତର ଉଲ୍ଲାସଗୁଡ଼ାକ । ଦେଶରେ କିନ୍ତୁ ଆଜିକୁ ମଧ୍ୟ ଲେଖକମାନେ ଓ କବିମାନେ ସ୍ୱାବଲମ୍ବୀ ହୋଇ କିନ୍ତୁ ଆମେ ତାହାଙ୍କ ଠାରୁ ଗଢ଼ି କରି ସର୍ବଦା ଅନ୍ୟର ଆଶା ରଖୁଛୁ । ଅନେକ ଅନ୍ତରରୁ ପ୍ରେମ ମନେ କରୁଛୁ ।

ଲେଖିବାକୁ ଓ କହିବାକୁ ଗଲେ ବଙ୍ଗଦେଶର କଥା ହିଁ ବାକି ପଡେ ହେଉ ଭକ୍ତ କବି ଗୋପାଳ କୃଷ୍ଣଙ୍କର ଗୋଟିଏ ପଦ ମନେ ପଡୁଛି 'ଶ୍ୟାମଙ୍କୁ ଅନାଇ ବୃନ୍ଦା ମନ୍ଦମନ୍ଦ ହସନ୍ତି ତହିଁ ଗୋ ।' ପ୍ରକୃତ ଦେବୀ ପରି ସେ ମନରଞ୍ଜନ କରିଥିଲେ ଯେପରି ମରୁଭୂମିରେ ଓଏସିସ୍ ଥାଏ । ସ୍ୱର୍ଗ ପଥରେ ଘନଛାୟା ତରୁ ଥାଏ । ପଥିକର ସନ୍ତାପ ହରଣ କରେ । ପ୍ରତ୍ୟେ ତତ୍ପର ହେବା ଦରକାର । ସବୁଯୁଗରେ ସବୁ ପ୍ରକାର ଲୋକଙ୍କ ଅନ୍ତର ଏପରି କେବେ କେହି ଅସ୍ୱୀକାର କରି ପାରିବେ ନାହିଁ । ବର୍ତ୍ତମାନ ଜାଣିଲି ଶ୍ରୀ ଜଗଦ୍‌ବନ୍ଧୁ ମହାପାତ୍ର M. A. ଆମ ସରକାରଙ୍କର ଜଣେ ପ୍ରଧାନ Secretary । ତାଙ୍କର କବିତା ପଦ ଏଠାରେ ଲେଖୁଛି ସେ ମହାତ୍ମା ଗୀତଗୋବିନ୍ଦକୁ ଓଡ଼ିଆରେ ଅର୍ଥ କରିଛନ୍ତି "ସଖି, ମୋ ବଚନ ଶୁଣ

ମୁଖର ଏତେ ତୋର ଛଟି ମଞ୍ଜୀର ଗୋ
ରତି ରିପୁ ମଣି କରହୁର ସଜାଣି ଗୋ,
ପତନୀ ବସିଲେ ଡାଳେ, ଗଛର ପତର ଚଳିଲେ ଶୁଣିଲେ ଗୋ,
ତୋର ଆଗମନୀ ବୋଲି ଭାବିଲେ ସଜନୀ ଗୋ।"

ଜଣା ଯାଉଛି ସତେ କି ସାମନ୍ତ ସିଂହାର ବିଦ୍ୟମାନ । ତାଙ୍କର ଏହି ପଦ ରଚନା କଳରେ ମୁଁ ମୁଗ୍ଧ ହୋଇ ତାଙ୍କୁ ସାକ୍ଷାତ କରିବା ପାଇଁ ଦିନେ ନୂଆ ସଚିବାଳୟକୁ ଦଉଡ଼ି ଯାଇଥିଲି । ତାହାଙ୍କ ସଙ୍ଗେ ସାକ୍ଷାତ କରି ସାହିତ୍ୟ ବିଷୟରେ କେତେକ ଆଲୋଚନା କରିଥିଲି, ତାପରେ ସେ ଅତି ଆନନ୍ଦରେ Sri P. N. Mohanty ଙ୍କ ସହ ସାକ୍ଷାତର ସୁବିଧା କରାଇ ଦେଇଥିଲେ । ମାନନୀୟ ମହାନ୍ତି ମହାଶୟ ମୋର କେତେକ ପୁସ୍ତକ ପାଠକରି ମୋ ସଙ୍ଗେ ସେ ବିଷୟରେ କିଛି କଥାବାର୍ତ୍ତା କରିଥିଲେ ।

କବି ଓ ପଣ୍ଡିତ ମାନଙ୍କ ମଧ୍ୟରେ ପରସ୍ପର ଭକ୍ତ:— ମୋର ଶ୍ରଦ୍ଧେୟ ଜୀବନ ଉତ୍ତମ ପୂର୍ବକ ଯାହାଙ୍କି ମହା ମାନବ ମହତାଙ୍କ ସାହାଯ୍ୟରେ ଭୂକ ଲେପାଇଥିଲୁ ତାହାର ମନ୍ତବ୍ୟରେ ବନ୍ଧୁତ୍ୱ ଲେଖିଛି । ତଥାପି ବର୍ତ୍ତମାନ ଅନ୍ୟଷ୍ଟିବେ ଆନନ୍ଦ ଗଦ୍‌ଗଦ୍ କଣ୍ଠରେ କହିବାକୁ ଯିବ ଉତ୍କଳର ପ୍ରଧାନ ଲେଖକ ଶ୍ରୀ ଗୋପୀନାଥ ମହାନ୍ତିଙ୍କ କଥା ସେ ସାନବଡ ସବୁ କବି ଲେଖକଙ୍କ ଅନ୍ତରକୁ ଭରନ୍ତି, ତାହାଙ୍କ ସାକ୍ଷାତ୍ ଥରେ ହୋଇଥିଲେ କେହି କବି ଲେଖକ ତାଙ୍କୁ ଭୁଲି ପାରିବେ ନାହିଁ । ଗୁଣ ଚାହେଁ ଗୁଣିଆ, ସୁନା ଚାହେଁ ବଣିଆ । ଆମ ଗାଉଁଲି ପୁରୁଣା କଥାର ମୂଲ୍ୟ ଅନନ୍ତ ।

ତାପରେ କହିବାକୁ ଯିବ ରେଭେନ୍‌ସା କଲେଜର ଅଧ୍ୟାପକ Dr. K. B. Tripathyଙ୍କ କଥା — ଥରେ ମୋର କେତେକ ପୁସ୍ତକ ତତ୍‌କାଳୀନ ପ୍ରିନ୍‌ସିପାଲ Sj. B. C. Dasଙ୍କ ନିକଟ ଯାଇଥିଲା । ତ୍ରିପାଠୀ ମହାଶୟଙ୍କ ଦୃଷ୍ଟିରେ ପଡ଼ିବାରୁ ସେ ମହାଶୟ ମୋର ଅଉ କେତେକ କବିତା ଆମ କେନ୍ଦୁ ପଡ଼ା ଦୋକାନକୁ ମଗାଇଥିଲେ ଦେଖିବାକୁ । ଏଥିରୁ ଜଣାଯାଏ ଯେ ପ୍ରକୃତ ମହତ ଓ ଉଦାର ସେ କାହାରିକୁ ଛୋଟ ମନେ କରେ ନାହିଁ ବା ଘୃଣା କରେ ନାହିଁ ।

ଶେଷରେ ଏହି ଅନଙ୍ଗ ମଞ୍ଜରୀର ଜୀବନଦାତା ଶ୍ରୀ ପୁରନ୍ଦର ବାବୁଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି । ଉତ୍କଳ ଜନଗଣଙ୍କର ସେ ଜଣେ ବରପୁତ୍ର । ମୋର କବିତାକୁମୁଦ ପୁସ୍ତକଟି ଏଥିପୂର୍ବର ମୁଦ୍ରଣ କରିବାପାଇଁ ସେ ସମ୍ପୂର୍ଣ୍ଣ ସାହାଯ୍ୟ କରିଥିଲେ । ଭଗବାନ ତାଙ୍କର ସର୍ବପ୍ରକାର ମଙ୍ଗଳ କରନ୍ତୁ ଓ ତାଙ୍କର ବଂଶଧରମାନେ ସୁଖୀ ହୁଅନ୍ତୁ ଏହାହିଁ ମୋର କାମନା ।

ତା ୧୩-୪-୬୧ରଖ
ମହା ବିଷୁବ ସଂକ୍ରାନ୍ତି

# ଶୁଦ୍ଧିପତ୍ର

| ପୃଷ୍ଠା | ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଅଶୁଦ୍ଧ | ଶୁଦ୍ଧ |
|---|---|---|---|---|---|
| ୨ | ଧନ | ଧନ୍ | ୩୦ | ଅଷ୍ଠି | ଅସ୍ଥି |
| ୬ | ଗଣିତ | ଗଣିକା | ୩୧ | ସଙ୍ଗରେ | ସଙ୍ଗତରେ |
| ୮ | ଚୁଣ୍ଡି | ଚୁଣ୍ଡୀ | ୩୪ | ଭାବର | ଭାବରେ |
| ୧୦ | ଭସନ୍ତୀ | ବାସନ୍ତୀ | ୩୬ | ଏଥ | ଏଥି |
| ୧୨ | ଖାବଣୀ | ଘାବଣୀ | ୪୨ | ପ୍ରଭୁକ୍ୟା | ପ୍ରଯୁକ୍ତା |
| ୧୨ | ପ୍ରକୃତୀ | ପ୍ରକୃତ | ୪୭ | ଷଟେକ୍ଷ୍ୟୁ | ଷଟେମାସୁ |
| ୧୩ | ରୁରୁ | ରୁରୁ | ୪୮ | ଋତାଂକ୍ତ | ଋତ୍ୱାଂକ୍ତ |
| ୧୪ | କେଳୀ | କେଳି | ୪୮ | ଚହିଁରେ | ଚହ୍ନିରେ |
| ୧୫ | ସ୍ୱବଣୀ | ସାବଣୀ | ୪୮ | ଅପାଙ୍ଗ | ଅପାଙ୍ଗ |
| ୧୫ | ଅପର୍ଣ୍ଣ | ଅପର୍ଣ୍ଣା | ୪୮ | ବାତ୍ୟାସୂନ | ବାତବହୁ |
| ୨୦ | ନୀରନ୍ତ | ନୀରତ | ୫୨ | ବସ୍ୟ | ବଶ୍ୟ |
| ୨୩ | ଦେହଗୀତ | ଦେହକ୍ଷତ | ୫୪ | ଖଡ଼୍ଗୁ | ଖଡ଼୍ଗ |
| ୨୩ | ନୀଲେଲ | ନିଲେଲ | ୫୬ | ଲଗ | ଲଗି |
| ୨୬ | ପୂର୍ବ | ପୂର୍ବ | ୫୬ | ଘ୍ରୃତ | ହୃତ |
| ୨୭ | ଖଳ | ଖଳ | ୬୧ | ମସୃଙ୍କ | ମାସୃଙ୍କ |
| ୨୭ | ଷଡ଼ଷି | ଷଡ଼ଷି | ୬୩ | ହରସେ | ହରଷେ |
| ୨୮ | କୁବେର | କୁବେର | ୮୧ | ଅଜିତ | ଅଜିତ |
| ୨୯ | ଅଜ୍ଞାତ | ଅଜାତ | ୧୦୦ପୃଃ | ଐରାବ | ଐରାବତ |
| ୨୯ | ଲଳିତା | ଲଳିତ | ୯୯ | ଫୁଲ | ଫୁଲ୍ |

୮୮ ପୃଷ୍ଠାର ୨୬ ପଦ ପରେ ୨ଟି ପଦ ସ୍ୱର କାମୋଦୀ ଅଟେ ।

[ କୃଷ୍ଣ କଂସ ନଗର ଯିବା ଶୁଣି କାତର ]

# କବି—ଶ୍ରୀ ଚନ୍ତାମଣି ମହାନ୍ତ (କେନ୍ଦ୍ରାପଡ଼ା)



ଜନ୍ମ ତାରିଖ—ସ୧୩୧୫ସାଲ, ମାର୍ଗଶୀର ଦ ୧୪ ନ ମୁତାବକ ସ୍ନ ୧୯୦୭ ମସିହା ନଭେମ୍ବର ତା ୨୯ରିଖ ଶୁକ୍ରବାର କୁଷ୍ମ ନବମୀ।

ଜନ୍ମସ୍ଥାନ—କଟକଜିଲ୍ଲା କେନ୍ଦ୍ରାପଡ଼ା ଥାନା ଅନ୍ତର୍ଗତ ତେରବିଶ ଅଞ୍ଚଳ ମଲ୍ଲି ଅଙ୍ଗ ଗ୍ରାମ।

ପିତା—ଆର୍ତ୍ତବନ୍ଧୁ ମହାନ୍ତ

ମାତା—ରାଜନ ଦେବୀ

# ଅନଙ୍ଗ ମଞ୍ଜରୀ

## ମଙ୍ଗଳା ଚରଣେ

( ବଙ୍ଗଳା ଶ୍ରୀ )

ଜୟ ବୀଣା ପାଣି ଜୟ କମଳିନୀ
ଶ୍ରୀପଦେ କର ଉଦ୍ଧାର
କବିତା କାନନ ତୋଳିଲି କୁସୁମ
ଗୁନ୍ଥିଲି ଗୋଟିଏ ହାର ।
ଜୟ ବିଶ୍ୱମୟୀ ଜଗତ ଜନନୀ
ତୁମ୍ଭେ ସର୍ବ ବିଶ୍ୱାଧାର
ବିଶ୍ୱମୟୀ ସତ ଯୁଗଳ ଚରଣେ
ଅର୍ପୁଛି ଏ ନବ ହାର ।

ଦେବଗୁରୁ ବିପ୍ର ସନ୍ଥ ଜନ ପଦେ କରୁଛି ଏଥେ ବିନତି
ମୋହର ପୂର୍ବ କବିକୁଳଙ୍କର ଚରଣେ ରହୁ ମୋ ମତି ।
ଲେଖିଲି ସୁନ୍ଦରୀ ଅନଙ୍ଗ ମଞ୍ଜରୀ, ମଧୁର ରସ ଲହରୀ
ସାହିତ୍ୟ ପ୍ରେମିକ ହୃଦୟ ଉଦ୍ୟାନେ ହେବ ବସନ୍ତର ପରୀ ।



# ପ୍ରଥମ ସୋପାନ

ଅତୁଳ ବିଭବ ଯହୁଁ ସମ୍ଭୂତ
ସ୍ୱଦେବ ମନ୍ତ୍ରାଧିପ
ପାରିଷ୍ଠ ଅଂଶ ହୋଇ ଶୋଭୁଛନ୍ତି
ସୁର ତଟିନୀ ସମୀପ ।
ବହୁଛି ସ୍ପନ୍ଦନ ଦଣ୍ଡା ହୋଇଅଛୁ
ଚନ୍ଦନ ତରୁରେ ସ୍ଥୂ
ଭୂରେ ବସିଛନ୍ତି ଧନୁଷ୍ପାଣି ହୋଇ
ଅଙ୍ଗ ରକ୍ଷୀ, ରଥୀ ଦ୍ୱୟ । ୨ ।
ଘନ ସମଣ୍ଡିତ ପୁଷ୍ପିତା ଲତିକା
ତରୁ ଶାଖେ ଅଚ୍ଛାଦିତ
ନୀଳ ନଭେ କିବା ତାରକା ଅବଳୀ
ହୋଇ ଅଛନ୍ତି ଉଦିତ । ୩ ।
ସମୀପ ସରିତେ କୁଳୁ କୁଳୁ ନାଦେ
ଲହରୀ ଯାଉଛି ବହି
ନୀଳ ଜଳ ବେଣୀ ଅବର୍ତ୍ତନ ମାଳା
ଭାବେ ଠାବେ ରହି ରହି । ୪ ।

ତଟ ବିଟପୀରୁ ବୃନ୍ତ ଛେଡ଼ି ଫୁଲେ
ଲହରୀ ମାଳାରେ ଦୋଳେ
କାଶ ନାଚ ଧୀରେ- ଧୀରେ ଯାଉଛନ୍ତି
ମହାନନ୍ଦେ ହର୍ଷ ଭେଳେ । ୫ ।
ଏ ସମୟେ ବନ୍ୟ ଖୋଜି ଖୋଜି ଯାଇଁ
ପ୍ରବେଶ ହୋଇଲ ଦୂତ
ରଥ ଅଶ୍ୱ ସବୁ ରହିଛନ୍ତି ସଙ୍ଗେ
ଯହିଁ ନିଦ୍ରା ଅଭିଭୂତ । ୬ ।
ତରଙ୍ଗ ଅଙ୍ଗରୁ ଶୀତ ବାତ ଆସି
ଫୁଲ ଦେଲା ଗୁଣ ହରି
କାନନ ଭିତର ଭୂଧର ପ୍ରାନ୍ତରେ
ଯାଉଛନ୍ତି ବାଘ ପ୍ରସର । ୭ ।
ଦେଖୁଛନ୍ତି ଭଦ୍ର ନୃପେନ୍ଦ୍ର ତନ୍ଦ୍ରାରେ
ଅକଳ୍ପିତ ଦିବା ସ୍ୱପ୍ନ
ଅର୍ଦ୍ଧ ଆକାଶରୁ ଧୀରେ ଧୀରେ ଖସେ
ଅପୂର୍ବ ସୌମ୍ୟ ସ୍ୟନ୍ଦନ । ୮ ।

କ୍ରମେ ଲତାନ୍ତରେ, ରହିଲ ସେ ଯାନ, ରଥୁ ଧୀରେ ଅବତରି
ଉଭା ହେଲେ ଆସି, ନୃପତି ସମ୍ମୁଖେ, କୁମାରୀ ଦିବ୍ୟ ସୁନ୍ଦରୀ । ୯
ଭଲେ ଦେଖାଦେଇ, ନନ୍ଦିଣିଲ ପରି, ମହାମାୟା ମାୟା ଧରି
ମନ୍ଦ୍ରେ କହିଲେ, ଶୁଭେ ଧ୍ୱନି କାହୁଁ, କେହୁ ନ କହିଲ ପରି । ୧୦
ଭଲେ ନିରେଖିଲେ-ଶନ୍ଧ୍ୟା ଗଗନେ, ଶନ୍ଧ୍ୟା ନଯାଅନ୍ତି ତହୁଁ
ପ୍ରକୃତି ବକ୍ଷରେ, ପ୍ରକୃତି ରହସ୍ୟ, କେ ପାରିବ ତାହା କହୁ । ୧୧
ଶୁଭିଲ ଅମ୍ବରେ ସ୍ପଷ୍ଟ କଥା ପରି, "ନୃପତି ! ଫେରିଯା ଘରୁ
ଅୟୋଜନ କର ଜେମା ସ୍ୱୟମ୍ବର ନିମନ୍ତ୍ରି ନୃପ ନିକର" । ୧୨

ଦେଖୁ ଦେଖୁ ଗଲ-ନୃପଙ୍କ ରଥ, ଅଦୃଶ୍ୟ ପଟେ ପଲଟେ
ସହସା ଭୂପତି-ଙ୍କର ଚେତା ହେଲ, ଶବ୍ଦର ସନ୍ଧି ଟଳଟେ ! ୧୩
ସୁପ୍ତ ଶ୍ରାନ୍ତ ନେତ୍ର-ମେଲାଇ ସ୍ୱପ୍ନ-ଦେଖିଲେ ଅଂଗ୍ର ଉପରେ
ଯୋଡ଼ ହସ୍ତେ ଉଚ୍ଚ-ହୋଇ ରହିଅଛି-ଛଦ୍ମବ ନମ୍ର ଖବର । ୧୪
ପ୍ରଣମି କହିଲ"ଶୁଣମା ମଣିମା ! ଯେଣିଠେଲ ମହାପାରୀ ବାଟେ
ନରବର ଈଲମ୍ୱ, ଉଆପେ ଏମନ୍ତ, କରନ୍ତୁ ବାହୁଡ଼ା ବଟେ । ୧୫
କାହିଁକି ବେଳଙ୍କି, କାରଣ ନଜାଣେ, ସୁମୁଖେ ତା ଦେବ ଜଣା
ଷମ ଦୋଷ ପ୍ରଭୁ ! ଏପରି ସତେବେଳ, ମୋ କର୍ମ ଅଜ୍ଞା ପାଳନା" ୧୬
ସ୍ୱପନ କଥାକୁ ଭୂତ କଥା ସଙ୍ଗେ, ମିଳାଇ ନୃପତି ବର
ଡର ଡର ହେଲେ, ନବରେ ଫେରବେ, ଚରଣ୍ଟି ମନସର । ୧୭
ସଭ ହେଲ ବାଙ୍କା, ଦେଲ ରଥ ସାଜ, ଆରୋହିଲେ ଭୂପବର
ଝିଲି ବସ୍ତୁ ଉଠି, ଏକ ବଳି ରଥ ଚାଲେ କାବା ପବାକର । ୧୮
ଗହନ ଗଡରେ, ଚଳାଇଲ ରଥ, ସ୍ୱନାମ ଧନ୍ୟ ସାରଥି
ଅତଙ୍କ ମଣିଲେ-ବିଚରଣ ଶୀଳ, ବନ ପଶୁ ପକ୍ଷୀ ପନ୍ତି । ୧୯
ପାର୍ଶ୍ୱ ସରସୀର, କେଳୀ କଉତୁକୀ, ସାରସେ ଯାଅନ୍ତି ଉଡ଼ି
ଭବଳ ପ୍ରତେଜ; କୁରଙ୍ଗ କୁରଙ୍ଗୀ, ଭୟେ ପଳାନ୍ତି ଦଉଡ଼ି । ୨୦
ଗନ୍ତ ପଥେ ନଗ୍ର, ପୁର ପଲ୍ଲୀ ବାସୀ-କରୁଥାନ୍ତି ଜୟ ସ୍ୱନ
ଭକ୍ତି ଭର ପ୍ରଜା-କୃତାଞ୍ଜଳି ପୁଟେ- କରନ୍ତି ଅଭିବାଦନ । ୨୧
ଯଥା ସମୟରେ-ପ୍ରବେଶିଲେ ନୃପ, ବଦେବ ପ୍ରସାଦ ଦ୍ୱାରେ
ଭାରତ ଗାୟନ, ଭରିଲେ ପାଳିତ, ସୁଚତୁର କଣ୍ଠସ୍ୱରେ । ୨୨
ଷଣୀ ହଂସପୁରେ-ରହିଲେ ନରେଶ-ହୋଇଲ ପ୍ରଦୋଷ ଗମ
ଚୂଡ଼ାନ୍ତ ସମାଜ-ମଧୁର ସୁଶ୍ରୁଷା-ହରଲ ପଥିକ ଶ୍ରମ । ୨୩
କହିଲେ ବିନୟେ-ପଞ୍ଚ ମହାଦେଈ- ନିଭୃତ କେଳି ନିଳୟେ
ଶୁଣନ୍ତୁ ହେ ନୃପ ! ଦେଖିଛୁ ସ୍ୱପନ-କାଲି ନିଶାନ୍ତ ସମୟେ । ୨୪

ଶୁଣ ଦେବୀ ନିଷ୍ଟେ ଅଂଶେ ଯେ ସେହୁ ଜଗଦ୍ଦୁର୍ଗା ନୃପାଳିନୀ
ମୋ ପତ୍ନୀଙ୍କ ପାର୍ଶ୍ୱେ-ଜନ୍ମ ହେଲେ ଆସି-ବାଳିକା ରୂପେ ତାରିଣୀ । ୨୫
ସେହୁ ଶଶ୍ୱାମ୍ବିକା-ବଂଶୁ ବିମୋହନୀ-କବର୍ଣ୍ଣିତ ତାଙ୍କ ଶୋଭା
କାଠୁଁ ଚକ୍ଷୁ ଯାଏ-ବିମୋହିତ ହୋଇ-ତାର ରୂପାନ୍ତର ଲୋଭା । ୨୬
ନାଥ ! ଝଲୁଥିଲା-ଅଳକେ ତାଙ୍କର-ଲଲାଟେ ସିନ୍ଦୂର ବିନ୍ଦୁ
ନୀଳ କୁମୁଦେକ-ଶରେ କଚ୍ଛମ୍ବ-ପୂର୍ଣ୍ଣିମା ପ୍ରଦୋଷ ଇନ୍ଦୁ । ୨୭
କୋକନଦ ନେତ୍ରେ-ଶୁଭ୍ର ଦରସ୍ମିତେ-କହୁଛନ୍ତି କର ସତ୍ୱର
କାନ୍ତ ପରାମର୍ଶେ-ନମନ୍ତି ଭୂପତି; ଶ୍ରେମାଙ୍କର ସ୍ୱୟମ୍ବର । ୨୮
କେଳୀ ମନାସିନୀ; ସୁକୁମାରୀ କେମା, ନିତ ମୋ ଦର୍ଶନେ ଯାଇଁ
ପ୍ରଣମି ପଦ୍ମରେ-ମନାସେ ନିର୍ମଳେ-କାନ୍ତ ସୁଖ ଭୋଗ ପାଇଁ । ୨୯
ଅନଙ୍ଗ ମଞ୍ଜରୀ-କାମନା ପୂରଣେ-ଅସିଲି ତୋ ସନ୍ନିଧିକୁ
ନ ଭାବଇ ରଜା, କହେ କନ୍ୟା କଥା, ଭଲପାଏ ପାଟିଧିକୁ । ୩୦
ଅନ୍ତର କହୁଛନ୍ତି, ମାତା ସୁବଚନୀ, ବାନ୍ଧିଛି ମୋତେ ସେ କଥା
ମାଆ ହୋଇ କାହିଁ, ବୁଝି ନପାରୁଛୁ, କନ୍ୟାର ବିରହ ବ୍ୟଥା ।
ଏହା କହି ଦେବୀ, ମୋ ଶୟନ କକ୍ଷ, ଧୀରେ ହେଲେ ଅନ୍ତର୍ଦ୍ଧାନ
ଭାଳୁଛି ସେ ରୂପ, ସେ କଥା ମାଧୁରୀ, କରନ୍ତୁ ପ୍ରଭୁ ବିଧାନ । ୩୨
ହିତ ସତ ମଣି, ରଜା କାନ୍ତା ବାଣୀ, କଲେ ବିଭା ଆୟୋଜନ
ଡକାଇଲେ ଦୂତ, ବୈଦିକ ପଣ୍ଡିତ, ପ୍ରମୁଖ ଯାକ ମନ୍ତ୍ରୀଗଣ । ୩୩
ବ୍ୟବସ୍ଥା ସମ୍ବନ୍ଧରେ, ସର୍ବେ ସ୍ଥିର କରି, ବିବାହ ମାସ ବାସର
ନିମନ୍ତ୍ରଣ ପତ୍ର, ଦୂତ ବରଟିଲେ, ପ୍ରତି ନୃପତି ଦେଶର । ୩୪
ସଜା ହେଲା ପୁର, ନଗର ବାହାର, ପାନ୍ଥଶାଳା ରାଜପଥ
ନିର୍ମିତ ହୋଇଲା, ପଟ୍ଟ ବାସମାନ, ନଦୀତୀରେ ଶତ ଶତ । ୩୫
ଘାଟମାନଙ୍କରେ, ନାଉରୀ ନଉକା, ଅଟକେ ହୋଇଲା ବନ୍ଧା
ବାଟମାନଙ୍କରେ, ମିଷ୍ଟାନ୍ନ ବିଧାନେ, ଅନ୍ନଦାନ ହେଲା ଖଞ୍ଜା । ୩୬

ଝାଃ ଝଟ୍ଟୁଆର, ଅଳସ ଭାଙ୍ଗିଲା, ଲାଗିଗଲା କେତେ ଧନ୍ଦା
ଞାଃ ଞାନ୍ତୁଅଙ୍କ, ଭରମ ଖୋଲିଲା, ଭାବିଲେ ବଣିକ ଫନ୍ଦା । ୩୭
ଟାଃ ଟାଙ୍କୁଅଙ୍କ, ମୁରଜ ମୃଦଙ୍ଗ, ଧ୍ୱନି, ଧରେ ଭଲ ସନ୍ଧ୍ୟା ।
ଠାଃ ଠାଣିମାନ, ଘେଟିବାରୁ ଭାଡି, ସଜ କଲେ ପରମଦା । ୩୮



( ସ୍ବଗ — ଶ୍ରେଖୀ )

ଅଙ୍ଗ ବିଦେହ ନଗର ଧନ୍ୟ ଅତି ମନୋହର
ବାଜଇ ବିବିଧ ବାଦ୍ୟ ମଧୁର ସ୍ୱରେ
ନୃତ୍ୟନ୍ତି ଗଣିକାଗଣ , ଦେଖନ୍ତି ଜନ ଗହଣ
ରାଜପଥେ ଘନଘଟା ଗଜ ଅଶ୍ୱରେ
ମନ ପ୍ରାଣ ହେଉଛି ଲୋଭା
ପ୍ରତି ଦ୍ୱାରେ ରମ୍ଭା ତରୁ କଳସ ଶୋଭା । ୧
ନଗ୍ର ପୁର ରାଜବାଟି ବାହ୍ୟ ବେଶ ପରିପାଟି
ଚାରୁକାର୍ଯ୍ୟ ହୋଇଅଛି ମନ ରଞ୍ଜନ
ଦେଉଳ ଅଟ୍ଟାଳି ଭିତ୍ତି ଶତ ପ୍ରତିମାର ପ୍ରୀତି
କରେ ସୁରପତି ପୁର ଶୋଭା ଗଞ୍ଜନ
ଅତି ସୁଖେ ବାୟୁ ତରଙ୍ଗେ
ଉଡ଼ଇ ପତାକା ଶ୍ରେଣୀ ବିବିଧ ରଙ୍ଗେ । ୨
ନାଟ୍ୟାଗାର-ପାନ୍ଥଶାଳେ ବିପଣୀ ତୋରଣ ମାଳେ
ଖଞ୍ଜା ହୋଇ ରହିଛି କେତେ କୁସୁମହାର

କାହୁଁ ବା ପୁଷ୍ପିତ କୁଞ୍ଜ    ନୂତନେ ହୋଇଛନ୍ତି ପୁଞ୍ଜ
ଫଳ ଭର ଲତା ପୁଞ୍ଜେ ନାନା ସମ୍ଭାର
ଫୁଲ ବନେ ଅଳି ଗୁଞ୍ଜନ
କରି ବୁଲେ ପ୍ରେମ ଭୁଲେ ମାନ ଭଞ୍ଜନ । ୩
କାହିଁ ଗୋଲ ନୃତ୍ୟ ବାଦ୍ୟ    ଷଡ଼ରସେ ହୁଏ ଖାଦ୍ୟ
ଠାବେ ଠାବେ ଗୃହ ଚନ୍ଦ୍ରାତପ ମଣ୍ଡଣି
ରଙ୍ଗେ ଝଞ୍ଜା ବାଜା ଯନ୍ତ୍ର    ସଙ୍ଗୀତ ମୋହିନୀ ତନ୍ତ୍ର
ସୁଶୋଭିତ ବହୁମୂଲ୍ୟ ଡେରା ଖଟଣି
ରାଜ ଯୋଗ୍ୟ ଯଥୋପଚାର
ବ୍ୟବସ୍ଥା ହୋଇଲା ସଂସ୍ଥା ନାନା ପ୍ରକାର । ୪
ଆସିଲେ ନୃପତିଚୟ    ଚଢ଼ି ରଥ ଗଜ ହୟ
କେହି ଲଭି ନିମନ୍ତ୍ରଣ କେହି ସ୍ୱଦେଶେ
ଦେଶମତେ ବେଶ ସାଜି    ଦେଖାନ୍ତି ତେଜମା ରାଜି
ରହିଲେ ବିଦେହାଧିପ ନନ୍ଦନ ନିର୍ଦ୍ଦେଶେ
ବଢ଼ିଲା ସବୁଙ୍କ କାମନା
ଦରଶନେ ସ୍ୱୟମ୍ବର ଲୋଲଲୋଚନା । ୫
ସ୍ୱର୍ଗୁ ଅମର ଅମରୀ    ମିଳି କିନ୍ନର କିନ୍ନରୀ
ଜେମା ଶୋଭା ବିଲୋକନେ ଗୁପ୍ତେ ଆସିଲେ
ନଗର ନାଗରୀକୁଳ    ସଖୀ ମେଳେ ହୋଇ ଠୁଳ
ଦ୍ୱିତଳ ପ୍ରାସାଦ ଚୂଳ ମଣ୍ଡି ବସିଲେ
ଶ୍ୱେତ ଶୈଳ ଶିଖରେ ଅବା
ସବୁ ପଦ୍ମମାଳେ ଯାଇ କରିଲେ ସଭା । ୬
ସୁରତ ବାଲୁକା କକ୍ଷେ    ଟହଲ, ପ୍ରାନ୍ତର ବକ୍ଷେ
ଥାଆନ୍ତି ରାଜନ୍ୟବୃନ୍ଦ ନଗ୍ର ବାହାରେ

ଚନ୍ଦ୍ରାଗ ସୁଶୋଭିତ ଯାନ ବାହାନେ ମଣ୍ଡିତ
ନବୋଧ୍ରବ ଶଙ୍ଖ ଥାଏ ସବୁର ଦ୍ୱାରେ
ଅଶ୍ୱ ହ୍ରେଷା, ଗଜ-ବୃଂହିତ
କମ୍ପାଏ ବିଦେହ ପୁର ପ୍ରାଙ୍ଗଣ ଶତ । ୭

କ୍ରମେ ସ୍ୱୟମ୍ବର ବେଳ ହେବରୁ ହୋଇଲେ ଠୁଳ
ଦେଶ ବିଦେଶ ଜନତା ହୋଇଣ ବ୍ୟସ୍ତ
ଦେଖୁ ଦେଖୁ ଗଲ ବଳି ଦର୍ଶକ ଗୋଳ ଚହଳି
ଶାନ୍ତି ରକ୍ଷକେ ଡାକନ୍ତି ଯୋଡ଼ିଣ ହସ୍ତ
ଧୀରେ ଦେଖ ସଜ୍ଜନ ତତ !
ବାନ୍ଧି ନେବେ ଜେମା ନିଜ ଇଚ୍ଛାରେ ପତି । ୮

ବିବାହ ମଣ୍ଡପ ଶେଷ୍ଠ ଅଟେ ଅତି ମନ ଲୋଭ୍ୟ
ବହୁ ମୂଲ୍ୟ ମଣି ରତ୍ନ ସ୍ୱର୍ଣ୍ଣ ମଣ୍ଡିତ
ଚାମର ଚାନ୍ଦୁଆ ଝଣା ପୁଷ୍ପ ଝଞ୍ଜା ଅକଳଣା
ହୁଣ୍ଡିଭୂତ ଛବି ବହୁଦେଶ ପଣ୍ଡିତ
ନିମନ୍ତ୍ରିତ ନରେନ୍ଦ୍ର ସର୍ବେ
ବସିଛନ୍ତି, ଅସୁଛନ୍ତି ଯଥା ଗୌରବେ । ୯ ।

ବିଜୁଳି ବ୍ୟଜନ ଗଣ ସ୍ନିଗ୍ଧ ଦାନେ ମୁକ୍ତ ପଣ
ଦୀପ୍ତି ପ୍ରଦାୟକ ବହୁ ରଙ୍ଗ ଆଲୋକ
ସୁଶୀତଳ ମଖମଲ ଆସନରେ ଝଲମଲ
ସୁରପତି ସଭା କିବା ଭାବନ୍ତି ଲୋକ
ପ୍ରତି ସ୍ତମ୍ଭ-ଉଚ୍ଚ ଦର୍ପଣ
ପ୍ରତିବିମ୍ବ ଛନକନ୍ତି ଦର୍ଶକ ଗଣ । ୧୦ ।

ବିବାହ ମଣ୍ଡପ ଶୋଭା ବର୍ଣ୍ଣିବାକୁ ଲାଜ ଲୋଭା
ହୋଇ ଏଣେତେ ସ୍ଥିର କରେ ତାହାର ମନ

ସଙ୍ଗିଂରେ ଏ ଶୋଭା ନାହିଁ   କେମେ ଗଲା ନଭେ ଧାଇଁ
ଯାନ ନେଲେ ଛାରେଖିଲ ନନ୍ଦନ ବନ-
ପାରିଜାତ-ସଙ୍କଲନା
ଢଳିଥିବେ ଚେଣୁ ଏ ତଥ ହେଲ କଳ୍ପନା । ୧୧

× × × ×

ଅନ୍ତଃପୁର ଖବଶ ସାରି   କେମାନଙ୍କର ଖିହ୍ନବଶି
ପମଣ୍ଡ ମଣାଇ ବଢେଇ କଲେ ମଣ୍ଡପେ
ଜାତିମନ୍ତ ନେଉଳ-   ବୁଦ୍ଧିମାନ ହେଲ ଟଙ୍କେ
ଆଲୋଚନା ସଭା ସର୍ବ ହୃଦୟେ କମ୍ପେ
ଏ, ଅମସ୍ତ, ଦେବେ ବା କେହ୍ନ
ମର୍ତ୍ତ୍ୟେ ଅପିରନ୍ତ ଧର ମାନବୀ ଦେହ୍ନା । ୧୨
ଛାଟେ କେ ରସିକ ମଣି   ସମା ହେବ ଏ ରମଣୀ
ଯଦି ହେବେ ତପ ପ୍ରଭା ଥିବ ତାହାର
ଜୁହେଁ ଏ ଉଦ୍ୟାନ ଫୁଲ   ଉଟେ ନାହିଁ ଏହା ମୂଲ୍ୟ
ଧନ୍ୟ ସେ ପୁରୁଷ ଭୃଙ୍ଗ ହେଉବ ହାର
ମର୍ତ୍ତ୍ୟ ରାଜ ଉଦ୍ୟାନ ଗୁଳ୍ମ
କାହିଁ ଜାତ କଲ ପାରିଜାତ କୁସୁମ । ୧୩
ଚମ୍ପାଗୋରୀ ଭବ ପ୍ରାଣି   ଧରିଲା ଖବୁର ଅଣି
ଚପଳା ପର ଚମକ ବଢ଼ିଲା ଦର୍ପେ
ସିଲାରେ ଫୁଲବେ ତନୁ   ଶର ମାରେ କି ଅତନୁ
ଶଚେ ଛତ୍ରମା ପରାଏ ବସିଲେ ନୃପେ
ବରହର ପ୍ରଥମ ଦଶା
ଅଜଳ ଶତଯେ ବସା କଲା ସହସା । ୧୪

ମଳୟା ବାସନ୍ତୀ ହସ୍ତୀ    ଜେମା ଦେଖ ପାର୍ଶ୍ୱେ ରହି
ଅରମ୍ଭିଲେ ଜେତେବ ପ୍ରତି ନୃପତି ପାଶେ
ବୁଝାଇ ଶୁଝାଇ କହି    ପ୍ରତ୍ୟେକ କୀର୍ତ୍ତି ଗାଇ
ପ୍ରସ୍ତୁତା ହୋଇଲେ ଯୋଷା ସନ୍ଦେହ ନାଶେ
ପ୍ରିୟମ୍ବଦା ମାଧବୀ ବାଳୀ
ସଖୀ ଦୁହେଁ ଧରିଥିଲେ ବନ୍ଦାଣ ଥାଳି । ୧୫
ବାସନ୍ତୀ ଯେ ସହଚରୀ    ସର୍ବ ଗୁଣେ ସେ ଚତୁରୀ
ନୃପ ସନ୍ତ୍ର ଗୁଣ କୀର୍ତ୍ତି ତାହାକୁ ଜଣା
ମଳୟା ନୁହଇ ସାନ    ଜାଣେ ସେ ବହୁତ ସ୍ଥାନ
ଦୁହେଁ ଦୁହିଁଙ୍କୁ ସମାନ ନୀତି ପ୍ରବୀଣା
ସବୁ ରାଜା ପାଶକୁ ନେଇ
ଜେମାଙ୍କୁ ସକଳ କଥା ଦେଲେ ଜଣାଇ । ୧୬



# ଦ୍ୱିତୀୟ ସୋପାନ

## ସ୍ୱୟମ୍ବର ସଭା

( ବଙ୍ଗଳାଶ୍ରୀ )

ପ୍ରବେଶିଲେ ଅଗ୍ରେ    ମଗଧେନ୍ଦ୍ର ଅଗ୍ରେ
ପ୍ରବଳ ନୃପତି ବର
ଯାର ରାଜଧାନୀ    ପାଶେ ଶୋଭା ପାଏ
ପର୍ବତ ମଳୟାଧର । ୧

ନିଜବଂଶୀ ସମ୍ପର୍କି-　　ଚନ୍ଦ୍ରବତୀ ନଦୀ
ରହିଛନ୍ତି ଅନତି ଦୂରେ
ଯା ମୃଦୁ ପବନ-　　ଉପବନ ଦେଇ
ସଞ୍ଚରଇ ରାଜପୁରେ । ୨
କହୁଥିଲା ଚତୁରୀ　　ଏ କଥା ତୋମାଙ୍କୁ
ଶୁଣ ଗୋ ପରାଣ ସଙ୍ଗ !
ଏ ନରେନ୍ଦ୍ର ରାଣୀ　　ହୋଇଲେ ସୁଖରେ
ବଳସିବ ତହୁଁ ରଙ୍ଗ । ୩
ପ୍ରବାଦ ରହିଛି　　ଜରାସନ୍ଧ ରାଜା
ଥିଲେ ସେ ରାଜ୍ୟ ରାଜନ
ଅଧିକାର କରୁ　　ଅଛନ୍ତି ଯେ ଏହୁ
ତାହାଙ୍କର ସିଂହାସନ । ୪
ଥିଲେ ଭାଗ୍ୟ ତବ　　ଅଭିଷେକେ ନବ
ନିବସିବ ଜବାଧନୀ
ଜନ୍ମକୁ ଅଣିଲେ .　　ଏ ଗୁଣ ସୁନ୍ଦର
ମାଳା ଦିଅ ଗୋ ସୁଦତି ! ୫
କହୁଥିଲ ପଦ୍ମୁଁ　　ସେ କଥା ତୋମାଙ୍କୁ
ଇଙ୍ଗିତେ ଚଳିଲେ ବ୍ୟଗ୍ରେ
ପହଞ୍ଚାଇ ଦେଲେ　　ସହଚରୀ ନେଇ
କୁଣ୍ଡି ନଗ୍ର ରାଜା ଅଗ୍ରେ । ୬
କହିଲ ମଳୟା　　ଶୁଣି ରାଜ ସୁତା
ଏ ବଡ ଧାର୍ମିକ ରାଜା
ଏହାଙ୍କ ନାମରେ　　ତିନି ଭୁବନରେ
ବାଜଇ ବିଜୟ ବାଜା । ୭

ଏ ରାଜା ବଂଶରେ ହୋଇଥିଲେ ଦ୍ୱିଜ
ଅନ୍ନପୂର୍ଣ୍ଣା ଦେହ ଧାରୀ
ତାହାଙ୍କ ସ୍ନେହରେ ଯାଇଥିଲେ ତହିଁ
ପରଂବ୍ରହ୍ମ ବଂଶୀଧାରୀ । ୮
ହରି ପଦ ଲଗି ପବନ ହୋଇଛନ୍ତି
ସେ ଦିନୁ ସେ ଦେଶ ଭୂଇଁ
ସକଳ ମାନବ ଇଚ୍ଛନ୍ତି ଯେ ଯାଇ
ଛୁଇଁବେ ସେ ସ୍ଥାନ ଧୂଳି । ୯
କୁଣ୍ଡଳୀ କାନନ ଅଛି ଯେହି ଦେଶେ
ଖାଣ୍ଡବୁ ବଳି ସୁଷମା
ବସନ୍ତ ନଗରେ ଶଠି ଅଛି ତହିଁ
ନଗର; ନାହିଁ ତା, ଉପମା । ୧୦
ପତିତ ପାବନୀ ଗଙ୍ଗା ତରଙ୍ଗିଣୀ
ମୃଦୁ ସମୀର ଶୀକର
ରଜ ଭବନର ଗବାକ୍ଷେ ପ୍ରବେଶି
ହୋଇଥାଏ ଶ୍ରମ ହର । ୧୧
ସ୍ୱର୍ଗ ଯଦ୍ୟପି ହୁଏ ଗୋ ସରଗ-
ସୁନ୍ଦର ! ଏହାଙ୍କୁ ବର
ଏ ରାଜାଙ୍କ ରାଜ୍ୟ ପ୍ରକୃତି ମହିମା
ଅଟେ ବଡ଼ ମନୋହର । ୧୨
ନମାନଲ୍ ଯହୁଁ ନାଗର ଅନ୍ତର
ଜାଣିଲେ ସଖୀ ନାଗର
ଭିକ୍ଷା କଲେ ନେଇ ଗନ୍ଧ ମଣ୍ଡନାଙ୍କୁ
ତେଣୁ ରାଜାଙ୍କ ଅଗର । ୧୩

କହିଲ ବାସନ୍ତୀ ଶୁଣ ଗୁଣବତୀ !
ଏହୁଟି, ଚେଦୀ ରାଜନ
ମହା କୀର୍ତ୍ତିଶାଳୀ ନରେନ୍ଦ୍ର ଅଟନ୍ତି
ଦମଘୋଷ ବଂଶ ଧନ । ୧୦
ଶାଲ୍ୱ, ଶିଶୁପାଳ ଦନ୍ତବକ୍ର ଥିଲେ
ଏହାଙ୍କର ପୂର୍ବ ବଂଶ
ଇଚ୍ଛିଲେ ଏ ନୃପ କରି ପାରନ୍ତି ଯେ
ଏକଦା ତ୍ରିପୁର ଧ୍ୱଂସ । ୧୫
ଯାହାଙ୍କ ପ୍ରଭାବେ ରୋଗ ଶୋକ ଭୟ
ଚେଦୀ ନଗରରେ ନାହିଁ
ଜରା ବ୍ୟାଧି ତାପ ଶମନ ପ୍ରତାପ
ହାତ ଯୋଡ଼େ ଦୂରେ ଥାଇଁ । ୧୬
ମନ ପାଏ ଯେବେ ବରମାଳା ଦେଇ
ସୁଖ ଭୋଗ କର ଯାଇଁ
ଅମ୍ଭେ ପ୍ରାଣ ସଖୀ ତୁମ୍ଭ ହିତ ପାଇଁ
କହୁଛୁ ଏତେ ବୁଝାଇ । ୧୭
ଶୁଣି ଏହି ବାଣୀ ରମା ଶିରୋମଣି
ଉପବଣ ଉହାଡ଼ିଲେ
ସେହି ଭଙ୍ଗିମାରୁ ଚତୁରୀ ସଙ୍ଗମୀ
ଜେମାଙ୍କ ମନ ଜାଣିଲେ । ୧୮
ଲୁହାଇଲେ ନେଇ ଜର ଲୋଚନାକୁ
କର୍ଣ୍ଣାଟ କେଶରୀ ଅଗେ
କହୁଁଲେ ଏ ନୃପ ରଖିଛନ୍ତି ଗଡ଼
ମାଳିନୀ ତଟିନୀ କୂଳେ । ୧୯

କିନ୍ନରୀ, ଅପ୍‌ସରୀ      ନୃତ୍ୟ ମନାସନ୍ତି
ଏହାଙ୍କ ବିଳାସ ଭାବ
ମନ ରଞ୍ଜେ ଯେବେ      କଞ୍ଜମାଳା ଦେଇ
କରନ୍ତୁ ଏହାଙ୍କୁ ଲାଭ । ୨୦

କେମା ମୂର୍ଖ ଜଣା      ଗଲା ଏହୁ କଥା
ଶୁଣି ନଶୁଣିଲା ପରି
ଚତୁରୀ ମଳୟା      ଧୀରେ ଘେନିଗଲା
ଅନ୍ୟ ଠାବେ କର ଧରି । ୨୧

× × × × ×

ନଭ ନାଭି ଶୋଭା      ଚନ୍ଦ୍ରାତପ ତଳେ
ଭ୍ରମିଲା ବେଳେ ସୁନ୍ଦରୀ
ବେନି ପାର୍ଶ୍ୱରେ      ରହିଥାନ୍ତି ଦେବୀ
ଅନ୍ତରଙ୍ଗା ସହଚରୀ । ୨୨

ଅଙ୍ଗରକ୍ଷୀ ସଙ୍ଗେ      କେଳୀ କଉତୁକୀ
ଅଳି ଥାଳି ଧରିଥାନ୍ତି
ସେ ସମସ୍ତ ଗତ      ଶୋଭା ବିଲୋକନେ
କାହାର ନଆସେ କ୍ଲାନ୍ତି । ୨୩

ଯେବେ କବି ଏଥେ      କଳ୍ପନା କୁଞ୍ଜରେ
ବର୍ଣ୍ଣିବାକୁ ସେ ସୁଷମା
ପରୀ, ବିଦ୍ୟାଧରୀ,      ଗନ୍ଧର୍ବେ କି ଅବା
ବିଳସୁ ଅଛନ୍ତି ରମା । ୨୪

କି ଅବା କୁମୁଦ      କହ୍ଲାର ମେଳରେ
ମାନ ସରୋବର ହଂସେ

ଚୌବନଦ ଏକ   ଭ୍ରମଣ କରଇ
ଧନମଣି କାନ୍ତ ଲଭେସେ । ୨୫
ପୂର୍ଣ୍ଣ ଶଶିକଳା   ମଉଳାଏ ଯେଉଁଥି
ତାର ବଳି ଶୋଭା ଧନ
ସଖୀ ବୃନ୍ଦ ସୌମ୍ୟ   ଯେମାଙ୍କ ମୂର୍ତ୍ତିମା
ଠାଣିରେ; ହୁଏ ଭେସନ । ୨୬
ଚନ୍ଦନେ ଯେପରି   ଗୋଲାପ ମାଟ୍ରୀ
କୁନ୍ଦ ନାଆଳର ବନେ
ଯେମାମଣି କାନ୍ତି   ଝଲସି ଉଠଇ
ଅନ ସୁନ୍ଦରୀ ଗହଣେ । ୨୭

× × × × ×

ପ୍ରବେଶିଲେ କ୍ରମେ   କାଞ୍ଚୀ ନଗର
କାମାକ୍ଷୀ ସେବକ ପାଶେ
କହିଲ ତଥ୍ୟ   ଯେମାଙ୍କୁ ମଳୟା
ବରମାଲ୍ୟ ଦେବା ଅଶେଷ । ୨୮
ଅଶିବ ବଚନ   ଏ ପୁର କାହାଣୀ
ନଥିବ ଧର୍ମ ମଣ୍ଡଳେ
ଦେବୀ ହୈମବତୀ   ପ୍ରସାଦେ ସେ ଦେଶ
ଛଳେ କାହାକୁ ନଡ଼ରେ । ୨୯
ଜଗତ ପାବନୀ   ମାତା ଶ୍ରୀ ଅପର୍ଣ୍ଣା
ଦିବସକେ ଗୃହ ରୂପ
ଧରଣ କାମନା   ପୂରଣ କରନ୍ତି
ସେ ପଦ ସେବି ଏ ଭୂପ । ୩୦

ଯୋଉଁ ବେଳେ ଯାହା ଇଚ୍ଛନ୍ତି ଅଲଭ୍ୟ
ହେଉଥିଲେହେଁ ହୁଅଇ ଲଭ୍ୟ
ତେଣୁ ଏ ନରେନ୍ଦ୍ର କାମନା ପଥରେ
ନାହିଁଟି କିଛୁ ଦୁର୍ଲଭ । ୩୧

ସ୍ତମ୍ଭନ, ମୋହନ, ଧରଣ, ଧାରଣ,
ବଶ୍ୟ ଅବା ଉଚ୍ଚାଟନ
ଯୁଦ୍ଧ କଉଶଳ ସଙ୍ଗୀତ ସାହିତ୍ୟ
ନିପୁଣ ଏହି ରାଜନ । ୩୨

ପାରଧି କୁଶଳ ତନ୍ତ୍ର, ମନ୍ତ୍ର ବଳ
ଜାଣିଛନ୍ତି ଯୁଗାନ୍ତକ
କାମାକ୍ଷୀ ପ୍ରସାଦେ ଲଭିଛନ୍ତି ସବୁ
ନାଗରୀକ କାଳାନ୍ତକ । ୩୩

ଯେବେ କାଞ୍ଚୀର ରାଜରାଣୀ ହେବ
ମନକୁ ଆସଇ ଧନୀ
ତେବେ ଇଚ୍ଛାମତ ଫଳକୁ ପାଇବୁ
ବର ଦେବେ କାତ୍ୟାୟନୀ । ୩୪

ପ୍ରାତଃ ଆରତୀରେ ଦର୍ଶନ କରବୁ
ଦେବୀଙ୍କ କୁମାରୀ କାନ୍ତି
ମଧ୍ୟାହ୍ନ ପାରଣା ବେଳେ ବୃଦ୍ଧା ରୂପ
ଦେଖି ତୁଟିଯିବ ଭ୍ରାନ୍ତି । ୩୫

ସନ୍ଧ୍ୟା ସେବା ବେଳେ କାମଶେଣା ରୂପ
ଅଟଇ କି ମନୋହର
ଶୃଙ୍ଗାର ଶୟନେ ବେଶକୁ ଧରନ୍ତି
ମୋହିନୀର କଳେବର । ୩୬

ଏମନ୍ତ ମାଧୁରୀ        ଦେଖି ସେ ନବରେ
ଶାନ୍ତି ଲଭିବ ନାରଡ
ଉନ୍ମତ ଭାଷି        କର ଘଜ ସୂତ୍ରା
ଚଳିଲ ଯାହା ତା ସ୍ୱତ । ୩୭
ନରୁଚିଲ ସେହୁ        ବଚନ ଧର୍ମାକୁ
ଇଚ୍ଛା ଅଛି ଯହିଁ ତହିଁ
ସେହି ଦେବୀ ସ୍ୱପ୍ନେ        କହିଛନ୍ତି ଯାହା
ତାହା ସେତ କହିବଇଁ । ୩୮
ମନ ଜାଣି ଦୂତୀ        ବାସନ୍ତୀ ସହସା
ଘେନିଗଲ ସଙ୍ଗମାଙ୍କୁ
କନାଉଜ ଦେଶ        ବୀରେନ୍ଦ୍ର ଶେଖର
ଉଦ୍ୟାନେକ ସନ୍ନିଧିକୁ । ୩୯
କହିଲ ବୁଝାଇ        ଧସ ମନ୍ତ୍ରୀଙ୍କୁ
ଧୀରେ ଧର ସହଚରୀ
ସରସ୍ୱତୀ ଶାଖା        ମଣିଭଦ୍ରା ତୀରେ
ଶୋଭେ ଏ ନୃପ ନଗରୀ । ୪୦
ସିଦ୍ଧଧାମୀ ପାଶେ        ରହିଛି ଲୋ ଧନି !
କୀର୍ତ୍ତି ସୁନ୍ଦର ପର୍ବତ
ବହୁଅଛି ବାସ        ତହିଁରେ ବସନ୍ତ
ସବୁଗରେ ଅନୁରକ୍ତ । ୪୧
ଏହାଙ୍କ ବଂଶରେ        ସକଳ ନରେନ୍ଦ୍ର
ଅନନ୍ତ ପ୍ରେମିକା ପ୍ରିୟ
ଦେଖ ଦେଖ ବନ୍ଧୁ        ଅନଙ୍ଗ ସୁନ୍ଦର
ଇଚ୍ଛା ହେଉଥିଲ ମାଳା ଦିଅ । ୪୨

ନ ରହିଁଲ ଟିକେ      ଅନ୍ତ ନେଟେଏ ବାମା
ନଶୁଣିଲ ସେହୁ କଥା
ଦେଖି ଚତୁର୍ଦ୍ଦିଏ      ଧୂଆଁଇଣି ନେଲେ
ନଦେଇ ହୃଦୟେ ବ୍ୟଥା । ୪୩

ଅଙ୍ଗ, ବଙ୍ଗ ଦେଶ      ନରେଶ ଭାରତ
ଗାଇଲେ ଯେ ଯେହୁ ରହୁ
ନରୁଚିଲ ଯହୁଁ      ଢେମାନ୍କୁ ସେମାନ
ଜାଣିଲେ ସକଳ ସଖୀ । ୪୪

ଯମୁନା ପୁଲିନ      ମାଳବ ନିବାସୀ
ନୃପ ଗାଥା ନଶୁଣିଲେ
ବାରଣସୀ ବାସୀ      କାଶୀ ନୃପତିଙ୍କ
କଥାକୁ ମଧ୍ୟ ଫେଟିଲେ । ୪୫

ଲୁହାଇଲେ ନେଇ      ରାଜ ଲଳନାକୁ
ମଦନ ବେଶରୀ ଅଗେ
ମତ୍ସ୍ୟ ମଗଧଦେଶ      ନୃପତି ଅନନ୍ତ
କହିଲେ ସବୁ ସରଗେ । ୪୬

ଏହାଙ୍କ ବଂଶରେ      ଥିଲେ ରାଜା ମୂର୍ତ୍ତି
ବିରାଟ ନାମରେ ଖ୍ୟାତ
କୀଚକ ପ୍ରଭାବେ      ପ୍ରବେଶୁ ନଥିଲା
ସେ ପୁରେ ଶତ୍ରୁ ଅଘାତ । ୪୭

ସେହି ରାଜଧାନୀ      କରୁଛନ୍ତି ଶୋଭା
କଳିଙ୍ଗର ଅନୁଗତ
ଶିହ୍ନାଇଣ ଦେଲା      ବରମାଲ୍ୟ ଦଅ
ଏବେ ତବ ଲକ୍ଷ୍ମ ମତେ । ୪୮

ଏ ରୂପ ବିଭ୍ରଷେ ହେତୁ ଭବ ଦେଖି
ଚଳାଇଲେ ସ୍ୱଦେଶୀ
ଲୁହାଇଲେ ନେଇ ଗୁରୁ ଚକ୍ରଙ୍କୁ
ଯାହାଁ ଅନଙ୍ଗ କେଶରୀ । ୪୯
ବାହୁଲେ ଲୁଟାଇ ମନ ମୋହନାଙ୍କୁ
ଶୁଣ ଗୋ ବୀରେନ୍ଦ୍ର ସୁତା
ଏହି ନୃପତିଙ୍କ କାନନ ଶଇଳେ
ଫଳଇ ମଣି ମୁକୁତା । ୫୦
ଭୂଧର, ପ୍ରାନ୍ତର ହ୍ରଦ, ସରୋବର
ନାନା ଦ୍ରବ୍ୟ ମନୋହର
ପ୍ରକୃତି ସୁନ୍ଦରୀ ଖଞ୍ଜି ରଖିଛନ୍ତି
ଏହି ରାଜାଙ୍କ ରାଜ୍ୟର ! ୫୧
ଗଜଦନ୍ତ ପାଇଁ ଅନଙ୍ଗ ପ୍ରସିଦ୍ଧ
ମିଳେ ବହୁ ମୂଲ୍ୟ ଦେଇ
ରାଜକୋଷ ସଦା ପରିପୂର୍ଣ୍ଣ ଥାଏ
ଶସ୍ତ୍ରାଗାରେ ଅସ୍ତ୍ର ଶସ୍ତ୍ର । ୫୨
ଝଟେ କଟେ ରାଜା ଅକ୍ଷୌହିଣୀ ଡମ୍ବ
ପତାକା ଉଡ଼ଇ ଆଗେ
ପଦାତି ସଇନ ଗଜ ଅଶ୍ୱ ରଥ
ବିଚଲିଜନେ ଭୟ ଲାଗେ ! ୫୩
କଳିଙ୍ଗ କୀରତି ନୁହଁଇ ଅଳପ
ତ ହା ତେ ବର୍ଣ୍ଣନାତୀତ
କି କହିବୁ ସଖି ! ଘୁମୁରେ ଡୁମୁର
ହୋଇବ ସମ୍ପୃକ୍ତ । ୫୪

ଉତ୍ତର ଦକ୍ଷିଣେ      'ଗଙ୍ଗା ଗୋଦାବରୀ
କଳିଙ୍ଗକୁ ଘେରିଛନ୍ତି
ପଶ୍ଚିମେ ନୀରବେ      ପ୍ରାଚୀର ପରାଏ
ଘେରିଛନ୍ତି ଶୈଳପନ୍ତି । ୪୫

କଳିଙ୍ଗ ଅଙ୍ଗକୁ      ପ୍ରାଚୀ ଦିଗ୍‌ବଳୟୁ
ଉଦଧି ତରଙ୍ଗ ମାଳ
ଧୋଇ ଦେଉଛନ୍ତି      ଭେଟି ଦେଉଅଛି
ମାଳ ମାଳ ଯେ ପ୍ରବାଳ । ୪୬

ମହୋଦଧି ତୀରେ      ନୀଳ ଶୈଳ ଶିରେ
ଅଛନ୍ତି ଦୀନ ବାନ୍ଧବ
ଶବର ସେବାରେ      ପୂର୍ବେ ନାମ ଥିଲା
ତାଙ୍କର ନୀଳ ମାଧବ । ୪୭

ବିରାଜ କରନ୍ତି      ବଡ଼ ଦେଉଳରେ
ଭକ୍ତେ ଯାଇଁ ବଡ଼ଦାଣ୍ଡେ
ଦର୍ଶନ କରଣି      ଚକା ନୟନଙ୍କୁ
କୈବଲ୍ୟ ଲଭନ୍ତି ଗୁଣ୍ଡେ । ୪୮

ବଡ ଦେଉଳର      ବଡଦାଣ୍ଡ ଯାତ
ବଡପଣ୍ଡା ବଡ ଭୋଗ
ସବୁ ବଡ଼ କଥା      ରହିଛି ସେ ଦେଶେ
ନାହିଁ ଗୋ ଏଣୁ କାହା ରୋଗ । ୪୯

ସେ ବଡ଼ ଦେଉଳେ      ଫର ଫର ଉଡ଼େ
ପତିତ ପାବନ ଧ୍ୱଜା
ମନା କରୁଅଛି      ସେ ଦେଶ ବାସୀଙ୍କ
ନାହିଁଟି ଶମନ ଦଣ୍ଡା । ୫୦

ଅଜ କମ୍ବଦନ୍ତୀ    ରହିଛନ୍ତି ଗୋ ସତ !
ଶୁଣ ହେ ପୁରୁଣା କଥା
ଯାହା ଯୋଗେ ସେହି    ଦେଶ ଚରଣରେ
ନୁଅଁନ୍ତି ସରବେ ମଥା ।୬୧

ଏକାମ୍ର ନାମରେ    କାନନ ଏକ ଦେଶେ
ଅଛି ଏକ ସରୋବର
ଯା,ଉପମେୟ ସମୋଜ୍ଞା    କଳପି ଅଗନ୍ତ
ସ୍ୱର୍ଗେ ଅମସ୍ତ ଅମର ।୬୨

ମଦନ ଦହନ    କଲେ ଷଡ଼ାନନ
ଏହି ବନ କୀର୍ତ୍ତି କଳାପ
ସେ ପାପେ ଭ୍ରମିଲେ    ସନ୍ତାପ୍ତ ମାନସେ
ଜନ୍ମିବ ପ୍ରୀତି ଅଳାପ ।୬୩

ଅଛି ଥରେ ଥରେ    ପ୍ରେମ ପ୍ରମୋଦରେ
ସୁରବାଳା, ଦେବକନ୍ୟା
ସୁଧାଂଶୁ ତନୟା    ଶୀତାଂଶୁ ମାଳିନୀ
ସୁଲକ୍ଷି ଚତୁରୀ ଧନ୍ୟା ।୬୪

କରୁଣକା ବେଣୀ    ଓଗିନୀ ଅସନ୍ତ
ରତୀ ରେଖା ଯେ କରୁଣା
ଏ ଦୁହେଁ ସୌନ୍ଦର୍ଯ୍ୟେ    ନୁହଁନ୍ତି ସଖି !
କେହି କାହାଠାରୁ ଊଣା ।୬୫

ଧଡ଼ୋକା ତନୁକା    ଶୁଚିନ୍ଦ୍ର ଲୋଚନା
ଅସ୍ତନ୍ତ ଯୌବନ ଭରେ
କ୍ଷ୍ୟାତ ଯୋଗବତୀ    ସୁଧୀ ସ୍ୱର୍ଗା ଦେବୀ
ଥାଆନ୍ତି ଯେ ସଙ୍ଗତରେ ।୬୬

ଏ ଷଡ଼ ରୂପସୀ ଷୋହଳ ବୟସୀ
ସ୍ୱର୍ଗେ କେଳୀ ରଚନ୍ତି
ସେହି ସରୋବର ଏହି ସଖୀଙ୍କର
ଭାଗ୍ୟଥିଲେ ହେବ ସଙ୍ଗୀ । ୬୭
ଦେଖି ସ୍ୱପ୍ନ ମଧ୍ୟେ ବରମାଲ୍ୟ ଧନୀ
ଲମ୍ବାଇ ଦେଲେ ଚଞ୍ଚଳେ
ଲଜ୍ଜେ ଗୁରୁ ଭୁରୁ ନେତ୍ର ଲକ୍ଷିଗଲ
ସ୍ୱକାନ୍ତ ପଦ ଅଞ୍ଚଳେ । ୬୮

× × × × ×

ଦେଖିଲେ ସକଳ ସଭ୍ୟ ସଦସଦ
ଭାରତ ଭୂପତି ଗଣ
ଅନଙ୍ଗ ମଞ୍ଜରୀ ଚନ୍ଦ୍ରଶେଷ ଗଳେ
କଲେ ମାଲ୍ୟ ସମର୍ପଣ । ୬୯
ଦେଖୁଥିଲେ କନ୍ୟା ପିତା ମାତା ବନ୍ଧୁ
ପ୍ରାସାଦ ଶିଖରେ ରହି
ଓହ୍ଲାଇ ଧାଇଁଲେ ଜେମା ସନ୍ନିଧିକୁ
ଧନ୍ୟ ଧନ୍ୟ ବୁଦ୍ଧି କହି । ୭୦



## ଅନଙ୍ଗ ମଞ୍ଜରୀଙ୍କର ଗୁଣ ବର୍ଣ୍ଣନା

( ରାଗ:—କଲହଂସ କେଦାର )

ଶିବେଦ ରାଜା ଚନ୍ଦ୍ରଭାନୁ ତନୁଜା
କୁଳ ଦେବୀଙ୍କ ପଦେ ଭକ୍ତି ପୂଜା ॥

ଅଦେବ ଦେବଗଣର ସୁଷମା ସମ
ଧରିଲେ ଦୁହେଁ ଏକ କାନ୍ତ ଜନ୍ମ । ୧ ।

ବେଦ ବିଧାନ ମତେ ପାଣି ଗ୍ରହଣ-
ହେଲା; ରକ୍ଷିଣ ସାକ୍ଷୀ, ଅଗ୍ନି ବ୍ରାହ୍ମଣ ॥
କଳିଙ୍ଗ ନୃପ ସୁତ-ମାଳ ନଳିନ
ସ୍ନେହେ ରହିଲେ ତହୁଁ କେତେକ ଦିନ । ୨ ।

ମନ୍ଦିର କାନ୍ତ ଦେଖି ହୃଦୟୁ ଦବା
ଶ୍ୱଶୁର ନାମ ଦେଲେ ମଦନ ପ୍ରଭା ॥
ନବ ଦମ୍ପତି ନବ ସବଗ ବନ୍ଧୁ
ସୁରତେ କଟାଇଲେ ସୁଖରେ ତେହୁ । ୩

ଭ୍ରମିଲେ ଗିରି, ନଦ, ସ୍ଥଳ କାନନ
ସର, ତଟ, ଉଦ୍ୟାନ, ପ୍ରମୋଦ ବନ ॥
ଚନ୍ଦ୍ରିକା କଳା ମନ ମୋହନ ରାତି
ଜାଣିଲ ସ ଧୂତା ପୀରତି ଗାତି । ୪

କାନ୍ତ ମନ ହରଣ ଗୁଣେ ନିପୁଣା
ନବୀନା ବାଳା ସଦା ପ୍ରୀତି ପୂର୍ଣ୍ଣା ॥
କୁଟିଳ କୁନ୍ତଳର ଭଙ୍ଗୀ, ସୁନ୍ଦର,
ଝୁଲଇ ପାଦେ ମନ ଯତି ଇନ୍ଦୁର । ୫

ନେଲ ଲତିକା ଗୁଳ ଦେଲେ ତରୁସି
ପୁରୁଷ ଧୀର ବୃତ୍ତ ହୁଏ ତରୁସି ॥
ଗତି ଗାମ୍ଭୀର୍ଯ୍ୟ ତାର ବାଣୀଙ୍କ ଠାଣି
ଟଣ୍ଡି ଦୀଠିଲ ମନ ପାରଇ ଠାଣି । ୬

ନାଟ୍ୟ-ଚାରୁକଳା, ଜାଣେ ନୃତ
ପ୍ରବୀଣା, ବୀଣା ବାଦ୍ୟେ ଭଙ୍ଗିମା କୃତ୍ୟ ॥
ବେଣୀ ବନ୍ଧନେ ଜାଲୀ ଅଟଇ ନିପୁଣା,
ମୃଦୁ ବଚନା, ହୃଦ ଭରା କରୁଣା । ୭

କୁସୁମ କଳି ତାର କଅଁଳ ଅଙ୍ଗ
ବର୍ଣ୍ଣନାତୀତ ତହିଁ ପ୍ରେମ ତରଙ୍ଗ ॥
ଐନ୍ଦ୍ରଜାଲିକ କଳା ଜାଣଇ ସେହି
ମନ୍ତ୍ରୀମଣ୍ଡଳେ ନାହିଁ ଜିଣିବ କେହି । ୮

ରଙ୍ଗିମା ବିଶେଷ ହାବ ଭାବ ବିବିଧ
ଏମାନ ଅଟେ ତାର ସ୍ୱଭାବ ସିଦ୍ଧ ॥
ନାଗରୀ କଳା ସହ ମଧୁର ହାସ
କରନ୍ତି ତାର ଅଙ୍ଗେ ପୂର୍ଣ୍ଣେ ନିବାସ । ୯

ଯେତେ ଗୁଣରେ ହୁଏ ପ୍ରମଦା ଗଣା
ଧାତା ଦେଇଛନ୍ତି ସବୁ ନ ହୋଇ ଉଣା ॥
ଅଧିକ ଅଛି ଗୁଣ ହୁଅଇ ଶୁଣା!
ପାରିଧି କରିବାରେ କେମା ନିପୁଣା । ୧୦

ପିତା ସଙ୍ଗତେ ବାଲ୍ୟେ ବୁଲି ଦୁହିତା
ସମର କଉଶଳେ ଅପରାଜିତା ॥
ଗୃହ ଧରମେ ବାଳୀ କମଳା ପରି
ବେଦ ବିଧାନେ ଧର୍ମ ସାବିତ୍ରୀ ସରି । ୧୧

ଅଗୁର ଶିକ୍ଷାଗୁରୁ ଗୁରୁ ଗୌରବ
ଅତିଥି ସତ୍କାରେ ଜାଣେ ସରବ ॥

ସୁଧା ସମାନ ତାର ମଧୁର ଭାଷା
ଥରେ ଶୁଣିଲେ ହେବ ଅଭୁତ ଆଶା । ୧୨

ସୁବାସୁ ଜଣାଯାଏ ପଦ୍ମଗନ୍ଧ କାନ୍ତି
ପ୍ରତି ଅଙ୍ଗର ଦ୍ୟୁତି ବେଳଗି କାନ୍ତି ।।
ସୁଷମା ରଚନେ ପୂର୍ଣ୍ଣ ଅଙ୍ଗ ସରସୀ
ଇଚ୍ଛଇ ମନ- ହଂସ ସତତ ରସି । ୧୩

ଭାବଇ ଜବ ଏକ ଶୋଭା ପସରା
ସଜାଡ଼ି ଧାତା ନିଜ ଶ୍ରୀକରେ ପରା ।।
ଉଚ୍ଚ୍ଚ ନାନା ଫୁଲ ଫଳ ଦଳରେ
ପଠାଇ ଦେଇଛନ୍ତି ଧରା ତଳରେ । ୧୪

ତପ ସିଦ୍ଧାନ୍ତ ପ୍ରେମ ବଣିକ ସାର
କରିବ ଏହୁ ଧନେ ଦେଖ କାରବାର ।।
ଧନ୍ୟ ତପସ୍ୱୀମାନେ ହେବେ ସଫଳ
ଜୟ ମା ବିଶ୍ୱେଶ୍ୱରୀ ଇଚ୍ଛା ସକଳ । ୧୫



# ତୃତୀୟ ସୋପାନ

## ଅନଙ୍ଗମଞ୍ଜରୀଙ୍କର ବନ ବିହାର

ରାଗ—ଦେଶାଖୀ

ଦିନେ ଅନଙ୍ଗ ମଞ୍ଜରୀ   ଡେକି ସବୁ ସହଚରୀ
ଭାବିଥିଲେ ଭ୍ରମିବାକୁ କାଶ ବନଜେ

ଏକାଙ୍କୀ କାନ୍ତ ସୋହାଗ        ଚନ୍ଦ୍ରିକାକୁ ଉପଭୋଗ
କଳ୍ପନା କୁଞ୍ଜରେ ରଖିଥିଲି ଯତନେ
ଦେଖି ଥରେ ଚନ୍ଦ୍ର ଯାମିନୀ
ସ୍ଥିରକଲି ପୂର୍ବ ବାଞ୍ଛା ପୂର୍ଣ୍ଣେ କାମିନୀ । ୧
ରଜନୀ ପ୍ରଥମ ଯାମ        ହୋଇଯାଉଁ ଅତିକ୍ରମ
ଉଚ୍ଚାଟ କରିଲି ମନ ବନ ବିହାର
ହୋଇ ଅସ୍ତ୍ର ଆଭରଣ        କରି ଅଶ୍ୱ ଆରୋହଣ
କାନ୍ତ ସଙ୍ଗେ ଘେନି ପୁରୁ ହେଲି ବାହାର
କାମକେଳୀ ନବ ଛଇଳା
ପ୍ରକୃତି ରଙ୍ଗିନେ ପ୍ରୀତି ଖେଳା ହୋଇଲି । ୨
କାଦମ୍ବରୀ ପୁଲିନେ ରଙ୍ଗେ        ଯାଉଁ ଯାଉଁ ସେ ତରଙ୍ଗେ
ଦେଖୁଥାନ୍ତି ଚନ୍ଦ୍ର ରଙ୍ଗ ଲହରୀ କୋଳେ
ବୃକ୍ଷ ତଳ ଜ୍ୟୋସ୍ନା ଛଇ        କାହିଁ ଅଛି କାହିଁ ନାହିଁ
ଟଳ ଟଳ ହେଉଥାଏ ଦୋଳନ୍ତି ଦୋଳେ
ଚଳଚିତ୍ର ପ୍ରତିମା ପରି
ବନକୁ ଖେଳାଉଥାଏ ବିଧୁ ଶର୍ବରୀ । ୩
କେଉଁଠାରେ କପିଯୂଥ        ଓଗାଳନ୍ତି ଆସି ପଥ
ନ ଜାଣନ୍ତି ବୀର ଭାବ ବୀର ଦମ୍ଭତ
କେଉଁଠି ଚକୋର ତତି        ଚନ୍ଦ୍ରିକାରେ ମୋଦ ମତି
ସିଂହୀ, ବ୍ୟାଘ୍ରୀ ବିଚରନ୍ତି ଘେନି ସ୍ୱଗତ
ନାହିଁ ଶବ୍ଦେ ଜିଂଘାସା ବୃତ୍ତି
ପ୍ରୀତି ପାଲଟାଇ ଅଛି ଦୁର୍ଦ୍ଧର୍ଷ ମୂର୍ତ୍ତି । ୪
କାହିଁ ମୃଗ ମୃଗୀ ଦଳ        ପିଉଛନ୍ତି ସୁନ୍ଦର ଜଳ...
କୁଳୁ କୁଳୁ ନାଦେ ମୁଗ୍ଧ ହୋଇ ସକଳ... ...

ତୁରଗ ଦ୍ୱିପ ଗମନେ    ଖଞ୍ଜନ ମର୍ମର ସ୍ୱନେ
କ୍ଷଣେ ଚମକି ଲୁହାନ୍ତି ହୋଇ ଲଜ୍ଜିଲ
ଏଣୀ ନୟନାଙ୍କୁ ଏଣିକି
ଦେଖିବାକୁ; ଲଜ୍ଜେ କାନ୍ତ, ଲୁହାଁ ତେଣିକି । ୫
ନୀଳ ବେଣୀ ଜଳାଧାର    ମଧ୍ୟରେ ସାରସବାର
ଶବଦାଇଥାନ୍ତି ସର ସ'ରସ କୁଞ୍ଜେ
ସରସ ମୃଣାଳ ଖାଇ    ସୁରଙ୍ଗେ ପକ୍ଷ ହଲାଇ
କରୁଥାନ୍ତି ଭଙ୍ଗୀ ହୋଇ ପୁଞ୍ଜେକୁ ପୁଞ୍ଜେ
ସରଳ ଶୋଭୀକୁ ସରାଗେ
ଲଜ୍ଜେ କାନ୍ତ; ଅନା ତହୁଁ ସରେକ ଅଗେ । ୬
କାନନ ତଡ଼ାଗ ଛବି    ଦେଖି ମନ ଯାଏ ଦ୍ରବି
ଶତଦଳ ପଦଦଳ ବିହଗ କୁଳ
କୁମୁଦ ଚନ୍ଦ୍ରମା ପ୍ରୀତି    ଦୂର ବାନ୍ଧବରେ ସ୍ଥିତି
ଶରସୀକୁ କରଣାରେ ମାନ ଶିଖିଲ
ଦେଖି ଏହୁ ଚିତ୍ର ସକଳ
ପରସ୍ପରେ ପ୍ରେମ ରସେ ଭଜନ୍ତି ଛଳ । ୭

× × × × ×

ବୃକ୍ଷ ଗୁଳ୍ମ ଲତାମାନ    ମାନମୟୀ ଦେଖି ମାନ
କେତେ କରୁଥାଏ କାନ୍ତେ କର ଇଙ୍ଗିତ
ବଢ଼ାଉଥାଏ ସେ ଭାବ    ନିଷ୍ଠା ମଞ୍ଜୁଳ ସ୍ୱଭାବ
ସରଳ, ଲଳିତ, ସ୍ନିଗ୍ଧ ତରଙ୍ଗ ସ୍ଫୀତ
ଲୁହଁ ବାଳା ଛନକି ଉଠେ
ଓଷ୍ଠାଧରେ ସ୍ମିତହାସ ଝଲସି ଫୁଟେ । ୮

ଝିଙ୍କାରି ଝାଇଁ ଝଙ୍କାର    କୁହୁକନ ପକ୍ଷୀ ହୁଙ୍କାର
ସଙ୍ଗେ ତାଳଦଏ ଦୂରୁ କୁରବୀ ସ୍ୱନ
ପ୍ରେମମନ୍ତ୍ର ବିକଶାଇ    ତନୁ ଦଏ ପୁଲକାଇ
ଗୁପତ ବାଣ ବିନ୍ଧଇ ଅବା ମଦନ
ଧୀରେ ଅଛି ମୋହ ଅବଶ
ମୋହନ ମନ୍ତ୍ରେ କରଇ ବେନିଙ୍କି ବଶ । ୯
ଭ୍ରମୁ ଭ୍ରମୁ କିଛି ଦୂରେ    ଦେଖିଲେ କାନନ ପୁରେ
ମଣ୍ଡପ ମଣ୍ଡିତ ଏକ ଲତିକା କୁଞ୍ଜେ
ଚଉପାଶେ ଦ୍ରୁମାବଳୀ    ବଲ୍ଲୀ ମଞ୍ଜରୀ, ଅବଳୀ
ଦଳବିକଶିତା କଳି କୁସୁମ ପୁଞ୍ଜେ
ମଦନର ମନ୍ଦିର କି, ସେ
କୁବେର ଅଳକା ଜଣା ସୁନ୍ଦର ଦିଶେ । ୧୦
ସରେ ଏକ ଜଳ ସ୍ୱଚ୍ଛ    ବନ୍ଧୁ ସ୍ଫଟିକ ପାବଚ୍ଛ
ଅଦୂରେ ରହିଛି ତାର  ପଶ୍ଚାତ ଭାଗେ
ତାର ତଟେ ସାଲ ମାଳ    ପୁଷ୍ପବନ୍ତ ଗୁଳ୍ମଜାଲ
ତମାଳ, ଅଶୋକ, ଚମ୍ପା, ଗୁବାକ ଆଗେ
ଇନ୍ଦୀବର- କୁମୁଦାବଳି
ଶୋଭା ପାଉଛନ୍ତି ସରେ ଭଳିକ ଭଳି । ୧୧
ବିଶେଷେ ତା ମନୋହର    ବଢ଼ାନ୍ତି ଉଭୟତର
କୁହ୍ନମା- କାରଣ୍ଡକୁଳ କ୍ରୀଡ଼ା ବିବ୍ରତ
ତହିଁ ଭୃଙ୍ଗ ବିନୋଦନ    ମୃଦୁ ଗୁଣୁ ଗୁଣୁ ସ୍ୱନ
ମନ ପ୍ରାଣ ହରୁଥାଏ ତା ଅନୁବ୍ରତ
କୁଞ୍ଜ ଦୋଳେ ଶୁକ ସାରିକା
ହୋଇଥାନ୍ତି, ଉଭୁ ତହିଁ ପ୍ରେମ ଭାବିକା । ୧୨

ଏମନ୍ତେ ଶୋଭା ସମ୍ପତ୍ତି ଲଭନ୍ତେ ପ୍ରେମ ସମ୍ପତ୍ତି
ନ ରହିଲା ଦେହ ଜ୍ଞାନ ଜଉପୃଙ୍କର
ଅଜ୍ଞାତ ଅଦେହ ପାଶେ ବନ୍ଧା ହେଲେ ପ୍ରେମ ପାଶେ
ସହଜେ ତ ପରସ୍ପରେ କଣା କାଙ୍କର
ନ ପାରିଲେ କେଣିକି ଯାଇ
ବଳିପିଲେ ସେ ମଣ୍ଡପେ ମନ ମଜ୍ଜାଇ । ୧୩



## ଅନଙ୍ଗ ମଞ୍ଜରୀଙ୍କର ମଣ୍ଡପ ବିଳାସ ଓ ଗନ୍ଧର୍ବ ଗନ୍ଧର୍ବୀମାନଙ୍କର ପ୍ରବେଶ

ରାଗ—ଅଷାଢ଼ ଶୁକ୍ଳ

ଲଳିତ ଲଳନା ରାଜ କୁମାରୀ
ନୂଆ କୁସୁମାଙ୍ଗୀ ସେ ସୁକୁମାରୀ
ଉତ୍ସାହେ ରହୁ ତହିଁ ଘେନି ରମଣ
ସେହୁ ମଣ୍ଡପେ କଲେ ଅବେକ୍ଷଣ
ପ୍ରେମ ସମ୍ଭବରେ
ସଞ୍ଚରଣ କଲେ ନାନା ଭାବରେ । ୧
ଏ ସମୟେ ଆସି ସ୍ୱର୍ଗୁ ରଥ
ଅବତରିଲା ସେ କାନନ ପଥ
ଗନ୍ଧର୍ବ ଗନ୍ଧର୍ବୀ ଅବରୋହଣ
କରି ପ୍ରବେଶିଲେ ସେ କୁଞ୍ଜବନ

ମିଳି ସବୁ ବାଳୀ
କୁସୁମ ତୋଳିଣ ଗୁନ୍ଥିଲେ ମାଳ । ୨
ତୋଳିଲେ ଭାମିନୀ କାମିନୀ ଫୁଲ
ଝରୁଣା ଗୁଆଳୀ, ମଲ୍ଲୀ, ବଉଳ
ଜୁଇଁଅନା, ଜୁଅ ଟଗର, ଚମ୍ପା
ଯାହାର ଯନ୍ତୁଁ ହେଲ ଅନୁକମ୍ପା
ହେନା, କରବୀର
ଯା ବାସେ ଭ୍ରମର ସଦା ଅଧୀର । ୩
ନାଗେଶ୍ୱର ତୋଳେ କେବଣ ବାଳୀ
କେ ସୁଗନ୍ଧରାଜ, ସେଗମ, ନଅଳୀ
କଣ୍ଟକ ଦୁର୍ଗରୁ କେତକୀ ସବ
ତୋଳିଲେ କେ ଅକାଳ- କେଳି କଦମ୍ବ
ଅଣି ଭର ଯନ୍ତ୍ର
ବିମଣ୍ଡିଲେ ବେଣୀ କେଶ ରତନ । ୪
ନନ୍ଦନ କାନନ ଶୋଭା ବିଭବ
ଯେଉଁ ପାରିଜାତ ମର୍ତ୍ତ୍ୟ ଦୁର୍ଲଭ
କୁଟିଳ କୁନ୍ତଳ କବରୀ ଦେଶେ
ଖଞ୍ଜିଥିଲେ ଅଗୁ, ଆଗମ ବେଶେ
କୁସୁମ ସୌରଭ
ବଢ଼ାଇଛନ୍ତି ସର୍ବ ରୂପ ଗୌରବ । ୫
ଚଞ୍ଚଳ ନୟନା ଚତୁରୀ କୁଳ
ପିନ୍ଧିଛନ୍ତି ସର୍ବେ ଶ୍ୱେତ ଦୁକୂଳ
ତହୁଁ ବିମଣ୍ଡିଲେ ରଙ୍ଗ ସୁମନ
ଉପମାକୁ କିଏ ହେବ ଭଞ୍ଜନ

ତାଙ୍କ ପ୍ରୀତି ରସ
ଦେବ ମାନବଙ୍କୁ କରନ୍ତି ବଶ । ୬
ବାହୁଡା ବସନ୍ତ ବେଳେ ସୁଜନା
ହୋଇଣ ଅତ୍ୟନ୍ତ ହରଷ ମନା
ମନେ ବହୁଥିଲେ ପ୍ରେମ ଗୌରବ
ଶୁଣିଲେ ଭାମିନୀ କଣ୍ଠର ରବ
ଛନକି ଚଇଲା
ନାରେଖିଲେ ଲତା ଅନ୍ତର ଶୀଳା । ୭
କଲଇନ୍ଦବର ଦଳ ଅକ୍ଷିତର
ଚତୁସ୍ର ଏଷଧ ଦାଶ ଦେଖିଲେ
ଲତାନ୍ତରେ ଏକରମ୍ୟ-ରମଣୀ
ସଙ୍ଗତରେ ଯେନ ପୁରୁଷ ମଣି
କରୁଛନ୍ତି ବିଳାସ
ଗୀତ ବାଦ୍ୟସହ ମଧୁର ହାସ । ୮
ଦେବନଙ୍କ ମୁକୁଟେ ଝଳଇ ମଣି
ଝଟେ କି ବା ଦୁଇ ବାଳ ଦ୍ୟୁମଣି
ସହଜେ,ରଜନୀ ନୁହେଁ ସମ୍ଭବ
କ୍ଷପମ ମଣି ତା ଦେବୀ ସରବ
ଶୁଣିଲେ ଗାୟନ
ବ୍ୟାଧ ଗୀତେ ଯେହ୍ନେ ହରିଣୀ ମନ । ୯
ମାନବୀ ଗାୟନେ ହୋଇଣ ପ୍ରୀତ
ବିସ୍ମରିଲେ ସ୍ୱର୍ଗ ଗନ୍ଧର୍ବ ଗୀତ
କିଛିକ୍ଷଣ ପରେ ପଡ଼ିଲା ମନେ
ଶଚିସ୍ୱନ ଅଛିଅଛି ଏ ବନେ

ଘୃଙ୍ଗଣ ଯେ ଭବ
ଅସିଲେ ଗନ୍ଧର୍ବ ବିଳାସ ଠ.ବ । ୧୦
ମାନନୀ କନ୍ଧର ମନ ମଜ୍ଜାଇ
ଖେଳି ମଣ୍ଡପକୁ ଦେଲେ ସଜାଇ
କରି ନାନା ବାଦ୍ୟ ଯନ୍ତ୍ର ବାହାର
ଆରମ୍ଭିଲେ ନାଗା ବନ ବହାର
କେ ବାଇଲ ବାଣା
କେ ବାଏ, କେ ନାଚେ ରସ ପ୍ରବୀଣା । ୧୧



## ଗନ୍ଧର୍ବ ଗନ୍ଧର୍ବୀମାନଙ୍କର ବନ ବିହାର

ରାଗ—ରାମକେରୀ

ଏଥୁଅନ୍ତେ ସର୍ବ ଗନ୍ଧର୍ବୀ
ଶତସେନକୁ ନେଇ
ନୃପଟବଣ କରି ଚନ୍ଦନୀ
ପରେ ଦେଲେ ବସାଇ । ୧
ଫୁଲେ କରଥିଲେ ଅଳଙ୍କ
ଫୁଲ ଫୁଲରେ ଝୁଲି
ଫୁଲ ଲଟେତ ମଣ୍ଡି ତୋରଣ
ସଜ ଫୁଲ ମୁଣ୍ଡୁଲୀ । ୨

ସିଞ୍ଚିଥିଲେ ଫୁଲ କେଶର
ଫୁଲ ପାଖୁଡ଼ା ଦେଇ
ଥୋଇଥିଲେ ଫୁଲ ଝରକୁ
ଚଉପାଶରେ ନେଇ । ୩
ହସି ହସି କେହୁ ପ୍ରମଦା
ପାଶେ ଭ୍ରମର ତାଳେ
ରସିକଣୀ କୁଳ ଶେଖରୀ
କେହୁ ବ୍ୟଜନ ଢାଳେ । ୪
ଅମର ବିଳାସୀ, ଗନ୍ଧର୍ବୀ
ଯେନ୍ତ ଗଣିକାଗଣ
ଅରମ୍ଭିଲେ ତୌର୍ଯ୍ୟତ୍ରିକକୁ
ମୁଗ୍‌ଧ ସକଳ ମନ । ୫
ମୃଦୁ ମୃଦୁ ଯନ୍ତ୍ର ଗୁଞ୍ଜନ
ବାଦ୍ୟ ନାଦ ସଂଗତେ
ପ୍ରତିଧ୍ୱନି ଛଳେ କାନନ
ସର ସ୍ୱର ଚମକେ । ୬
ଶ୍ୟାମଳିତ ଦ୍ରୁମ ଆବଳି
ଯେନ୍ତ ସ୍ତବକ ଦୋଳି
ଟସ ପ୍ରୀତେ ଶରୀର ହଲଇ
ଡାଳ ଦଉନ୍ତ ତୋଳି । ୭
ନିଜକୁ ସୌଭାଗ୍ୟ ମଣିଣ
ସୁଖୀ ହୁଅନ୍ତ ଯେଣୁ
ଉପହାର ଛଳେ ବଣ୍ଟନ୍ତ
ଫୁଲ ପାଖୁଡ଼ା ରେଣୁ । ୮

ଅଳ୍ପ ଦନ୍ତୁ ଦୂରେ ସ୍ତମ୍ଭିତେ
ବନ ଶ୍ୱାପଦ କୁଳ
ଯୂଥ ଭେଳ ଗୁହ୍ନି ରହନ୍ତି
ହୋଇ ପ୍ରୀତ ଅକୁଳ । ୯
ପତଙ୍ଗ ନିକର ସେ ମୂଢେ
ହୋଇ ଧୀରତ ବାଇ
ଲମ୍ଫ ଦ୍ୟନ୍ତି ପ୍ରଜ୍ଞ ଫଳକେ
ପଥ ପୁଚ୍ଛି ହଲାଇ । ୧୦
କନ୍ତୁ କନ୍ତୁ ନଶ୍ୱ ନିଯାମ
ଅସ୍ତି ହୋଇଲା ଶେଷ
ଅର୍ଦ୍ଧ ହେଲା ଶ୍ରଦ୍ଧି ଭାଙ୍କର
ନୀଳ ଶଇଳ ବେଶ । ୧୧
ଲଳନ ମାଧୁରୀ ଶାନ୍ତିରେ
ପୂର୍ଣ୍ଣ ସକଳ ସୃଷ୍ଟି
ବାରୁଣୀ ତୋରଣ ଅଙ୍କକୁ
ବଧୂ ମୋଢ଼ଲେ ଦୃଷ୍ଟି । ୧୨
ଝଗନେ ପବନ ସଲ୍ଲିଲ
ନାଦେ ମନ୍ଥର ଗତି
ଉଚ୍ଛୃତ ତରଙ୍ଗ ମର୍ମରେ
ଅନ୍ଥି ସଙ୍ଗୀତେ ମତ । ୧୩
ତରୁ ଗୁଳ୍ମ ନବ ଲତିକା
ହର ପଲ୍ଲବେ ଅଙ୍ଗ
ଲଣାର ନଟନ ପ୍ରକୃତର

ବିମୋହ ହୋଇଣ ଦେଖନ୍ତି
ନବେ ତାରକାଗଣ
ଦେଖାଯାଏ ଦେହେ ଅଛିତ
ନାହିଁ ମୂର୍ଚ୍ଛେ ଜୀବନ । ୧୫
କେବଳ ଉତ୍ତାପେ ଅଗ୍ନିଣ
ଚଉ ପ୍ରହସ୍ତ ତାସ
ହସ ହସ୍ତ ମୁଖେ ଦେଖୁଛି
ହୋଇ ନିପୂନ କାସ । ୧୬
ଏ ସମୟେ ହେଲ ନୃତ୍ୟର
ଦ୍ରୁମ ଭଙ୍ଗିମା ଘଣା
ଏ ବିଷମ ଶବଦ ସେଜନଙ୍କୁ
ସ୍ୱପ୍ନେ ହୋଇଲ ଛଣା । ୧୭
ଭାଷିଲେ ସକୋଧେ ଶୁଣ ହେ
ମୋର ନନ୍ଦିନୀଗଣ
ଅନ୍ୟମନା ହେଲ କାହିଁ ତ
କହ ସତ୍ୟ କାରଣ । ୧୮
ଉଚିତ ଦେଖା ଦେଲ କି ଛବି
ନବେ ନାହିଁ ଯେ ତାହା
ଶୁଣି ବା ମୋହିଲ କି ଶବ୍ଦ
ସ୍ୱର୍ଗେ ଅଶ୍ରୁତ ଯାହା । ୧୯
କି କଥା ହୋଇଲ ମାନସେ
ନବେ ଅଭାବ ବିଷ ?
ସୁରପତି ପୁରେ ନାହିଁ ଯେ
ଆଉ କେଉଁ ଜନ୍ତୁଷ । ୨୦

ଅତ୍ ବା ଡେ ଅଛୁ କିପୁରେ
ବଡ ମୋ ଠାରୁ ବାର
ଡାହା କଥା ଭାବ କଇ ଯେ
ମନ ଏତେ ଅସ୍ଥିର । ୨୧
କର ନୃତ୍ୟ ରସ ସ୍ଥଗିତ
କୁହ କୁହ ସେ କଥା
ନୋହିଲେ କରବ ଏହାର
ସମୂଚତ ବ୍ୟବସ୍ଥା । ୨୨
ହୋଇ ସୁରପୁର ଭାବନା
ଉବେ ବ୍ୟାକୁଳ ମନ
ଏଥୁ ବଳ ଦୁଃଖ କ ଅଛୁ
କହ ପ୍ରମଦା ଗଣ । ୨୩
ତୁମ୍ଭ ପ୍ରେମେ ପଗ ରସଜ୍ଞ
ସ୍ବର ପୁରେ ସରବ
ତୁମ୍ଭ ପ୍ରୀତି ରସ ନ୍ ଜାଣ୍ଡ
ମର୍ତ୍ତ୍ୟ ବୁଧ ମାନବ । ୨୪

ଅଙ୍ଗରେ ପାଳଚ ମୋହନ୍ ଶତ ଶତ ଗନ୍ଧର୍ବ
ଷହଙ୍କେ ଗନ୍ଧର୍ବୀ ତୁମ୍ଭେ ଯେ କର ଏତେ ଗରବ । ୨୫
ନୃତ୍ୟ ପାଇଁ ତୁମ୍ଭେ ପାଳତା ମେନା ଉର୍ବଶୀ ମାନେ
ଦେବ ସଙ୍ଗେ ନୃତ୍ୟ ବହର ପସ ଦେବ ବମାନେ । ୨୬
ତବ ଦରଶନ ଅଶାସ୍ତୀ ସଦା କିପୁର ବାସୀ
କଳ୍ପନାରେ ପୁଣି ହେଲ ଯେ ତାହା ପ୍ରେମ ପ୍ରୟାସୀ । ୨୭
ତୁମ୍ଭ ହାବ ଭାବ ଶିଖିବା ପାଇଁ ସବୁ ନାୟିକା
ଉଗବ୍ବତୀ ପଦେ ଜଣାନ୍ତ ହୋଇ ସ୍ତବ ଗାୟିକା । ୨୮

କହ ନୃତ୍ୟ ଭଙ୍ଗ କାରଣ ହେବ ଯାଇଁ ପ୍ରବୋଧ
ନୋହିଲେ ସତ୍ତ୍ୱରେ ନେବ ମୁଁ ଏହାର ପ୍ରତିଶୋଧ । ୨୯
ଶାସ୍ତ୍ର କଥା ଆଜ ନିଷ୍ଟସ୍ୟ ମୂର୍ଦ୍ଧ ପ୍ରମାଣ କଲ
ରମଣୀ ହୃଦୟ କେବେହେଁ କେହୁ ନ ପାରେ କଳି । ୩୦
ବିଶ୍ୱାସ ଅଯୋଗ୍ୟା ରମଣୀ ଶୁଣ ବୃଦ୍ଧଙ୍କ ବାଣୀ
ତାହା ବର୍ତ୍ତମାନ ନିଷ୍ଟିତେ ପାରୁଅଛୁ ମୁଁ ଜାଣି । ୩୧

X X X X X

ଚକିତା ହୋଇଣ ସ୍ଖଳିତା ହେଲେ ବାଳା ମଞ୍ଜରୀ
ଭେଦିଲା ସ୍ଥିତରେ ସୁରେଶ ସୁତ ବଚନ ଗୁଳି । ୩୨
ଏହିକ୍ଷୁ ଅତୋରକ ରୁହିଁଲେ ବଣା ମୃଗଣୀ ପରି
ହୃଦୟ ସରସୀ ଲହରୀ ବେଣୀ ଜଟିଳ ଥିରି । ୩୩
ପ୍ରେମ ମନ ବନ ବିଟପି ସବୁ ଝାଉଁଳି ଗଲା
ସୁହାସ ଅଧର ସରସୀ ପଦ୍ମ ପଙ୍କିଲ କଲା । ୩୪

X X X X X

ସ୍ୱିବ ବିନୋଦିନୀ ଭାବିଲେ ଦେବ ନର୍ତ୍ତକୀଙ୍କୁ ଶାପ
ପ୍ରକାଶ କରିବା ପ୍ରକୃତ କଥା ନକର ଯାପ୍ୟ । ୩୫
କର ଯୋଡ଼ି ତହୁଁ କହିଲେ ଶୁଣ ଗନ୍ଧର୍ବ ପତି !
ଝଳିଗଲା ଆମ୍ଭ ମାନସ ଯେଉଁ କାଶୟ ପ୍ରତି । ୩୬
ଯାହା ଯୋଗେ ଆମ୍ଭେ ହୋଇଲୁ ସର୍ବେ ଅନ୍ୟମନସ୍କା
ଯେଉଁ ମୃଦୁ ନାଦ କରିଲା ଅଣ୍ଣ ପଦକୁ ଅଦା । ୩୭
ଯେଉଁ ସ୍ୱର କଲା ଚଞ୍ଚଳ ଅମ୍ଭ ଶ୍ରୁତି ଯୁଗଳ
କି ବର୍ଣ୍ଣିବୁ ପ୍ରଭୁ ସମ୍ମୁଖରେ ଅସମ୍ଭବ ସଙ୍କଳ । ୩୮

ନାଗପୁରେ ନାହିଁ ଓସ ସ୍ୱର ନାହିଁ ଅମର ପୁରେ
ନାହିଁ ନାହିଁ କେବେ ବୈକୁଣ୍ଠେ ତାହିଁ ଶୁଣିଛେ ସୁରେ । ୫୯
ଚତୁର୍ଦ୍ଦଶ ପୁରେ ମୋହୁବେ ଶୁଣି ସେହୁ ନିକ୍ୱଣ
ଅମ୍ଭେ ତ ସହଜେ ସ୍ଥାଣୁଙ୍କ ନୃତ୍ୟ ନନ୍ଦିନୀ ଗଣ । ୬୦



## ଦେବ ବାଳାମାନଙ୍କର ଉତ୍ତର

ତୋଳୁଥିଲୁ ଅମ୍ଭେ   କାନନ କୁସୁମ
କେଳି ମନାସୀ ସରବ
କରମ ମୃଦୁ ସ୍ୱରେ   ଶୁଭିଲ ଅଦୂରେ
ଲଳନା ଲଳିତ ରବ । ୧
ଚମକି ଛଇଲା   ଧୀରେ ଲତାନ୍ତରେ
ଚାହିଁଲୁ ଯେ ଏଣେ ତେଣେ
ଶବରୀ-ସଙ୍ଗୀତ   ଶ୍ରୁତ ମୃଗ ପରି
ଯାଇ ନପାରିଲୁ କେଣେ । ୨
ଚତୁର୍ଥୀ ଶ୍ରେଷ୍ଠା ଯେ   ଅମ୍ଭ ମଧ୍ୟେ ଥିଲେ
କ୍ଷଣ ବାର କଲେ ସ୍ଥିର
ମଣ୍ଡପର ରମଣୀ   କରେ ତୌର୍ଯ୍ୟତ୍ରିକ
ସଙ୍ଗେ ଶ୍ୱେନ ଏକ ସୀର । ୩
ତାପରେ ସବେଗେ   ଦେଖିଲୁ ସନ୍ନିବେ
ସେ ରୂପ ମାଧୁରୀ ଠାଣି
ମନେ ପଡ଼ିଗଲା   ସେ କଥା ଏଖଣି
ଛନକିଲା ଅମ୍ଭ ଅଣି । ୪

× × × ×

ଶୁଣିଛୁ ନବୀନ ବସନ୍ତ ସମୟେ
ମଞ୍ଜୁ କୁଞ୍ଜେ ପିକ ଗାନ
ସ୍ୱର୍ଗ ଭବନରେ ଶ୍ରବଣ କରିଛୁ
ମଧୁର ବିପଞ୍ଚି ତାନ । ୫
ପ୍ରମୋଦ ଭବନେ ଶୁଣିଛୁ କୌତୁକେ
ଲଲନା ଲଳିତ କଣ୍ଠ
ଯେଉଁ ବଂଶୀ ତାନ ଭରିଛି ଦ୍ୱାପରେ
ଗୋପୀଙ୍କ ଦୂଷିତ କଣ୍ଠ । ୬
ବନ ଦେବୀଙ୍କର ମଞ୍ଜୁଳ ଅମୃତ
ଗାୟନ କେତେ ଶୁଣିଛୁ
ପୁରନ୍ଦର ପୁର ଦେବ ବାଳାଙ୍କର
ବିତାନ ମନେ ରଖିଛୁ । ୭
ଇଥର ଯନ୍ତ୍ରରୁ କେତେ ଜଗତରୁ
ଶୁଣିଛୁ ମୋହନ ଗୀତ
ସ୍ୱର ବଧୂଙ୍କ ଅର୍ଘ୍ୟ ରୂପି ଦେବ
ଧ୍ୱନେ ହୋଇଥିଲୁ ପ୍ରୀତ । ୮
ଅମ୍ଭେ ସୁର ବାଳ- ଭାଷୀ ଅମ୍ଭ ସ୍ୱର
ଭଙ୍ଗାଏ ଯୋଗୀର ଧ୍ୟାନ
ଯେତେ ଯା କହିଲୁ ସକଳଙ୍କ ଗୁଣ
ଅଟେ ଅତୃପ୍ତି ମାନ । ୯
କିନ୍ତୁ ସେ ରମଣୀ ସୁସ୍ୱର ସକଳ
ଅତୃପ୍ତିରୁ ବଳିଲା
ଶୁଣିଛୁ ଶୁଭୁଛି ସେ ସ୍ୱର ଅମ୍ଭଙ୍କୁ
ହେଲ ମନ ନୈରାଶ୍ୟ । ୧୦

ଏ ନାଗର ପଣ୍ୟ    ବଚନ ହେ ପ୍ରଭୁ !
ଭାଷିଲ ଲକ୍ଷ୍ମୁଙ୍କ ଅଗ୍ରେ
ଯାହା ଦଣ୍ଡ ଦେବ    ଭୋଗିବୁ ହେ ଦେବ !
ଯାହା ଥିବ ଅମ୍ଭ ଭାଗ୍ୟ । ୧୧

× × × ×

କାହୁଁ ଅସିଛନ୍ତି    ପ୍ରେମିକ ପ୍ରେମିକା
ଅମ୍ଭଙ୍କୁ ତାହା ଅଜଣା
କି ଅବା ବିଧାତା    କରନ୍ତି ଜଗତେ
ତାହାଙ୍କୁ ନବ ସର୍ଜନା । ୧୨
ହୁଏଇ ପରତେ    ଅସି ଅବା ସତେ
ସ୍ୱଦେହେ କୈଳାସ ପତି
ଚନ୍ଦ୍ର ଯାମିନୀରେ    କୁଞ୍ଜେ ବିଳସନ୍ତି
ଯେମନ ପ୍ରିୟା ପାର୍ବତୀ । ୧୩
କି ଅବା ଅଦେହ    ଦେହକୁ ଧରିଣ
ରତୀଙ୍କୁ ବସାଇ କୋଳେ
ପଞ୍ଚ ବିଶିଖର    ଗୁଣକୁ ଟଙ୍କାରି
ବିମୋହ ଅଛନ୍ତି ଭୋଳେ । ୧୪
ଭାବୁଅଛୁ ପୁଣି    ନାରାୟଣ କିବା
ସଙ୍ଗେ ଦେନି ରସେଶ୍ୱରୀ
ବୈକୁଣ୍ଠ ତେଜିଣ    ମର୍ତ୍ତ୍ୟେ ଅସିଛନ୍ତି
ରସୋତ୍ସବ ଇଚ୍ଛା କରି । ୧୫



# ଚତୁର୍ଥ ସୋପାନ

## ନୀଳ ନଳିନ ବା ଚନ୍ଦ୍ରପ୍ରଭଙ୍କ ନିକଟ ଚନ୍ଦ୍ରସେନ ଗନ୍ଧର୍ବଙ୍କର ଗମନ ଓ ଅନଙ୍ଗ ମଞ୍ଜରୀଙ୍କର ଶୋଚ୍ୟ ବିଲୋକନ

( ସ୍ୱର—ଚତୁର୍ଦ୍ଦଶାକ୍ଷରୀ ଷଷ୍ଠାବସ୍ଥା )

ଅପ୍ସରୀ ମାନଙ୍କଠାରୁ ଏ ସମ୍ବାଦ ପାଇ
ଉଠିଲେ ସେ ଚନ୍ଦ୍ରସେନ ଆସନ ଝମ୍ପାଇ । ୧
ସୁମରଣା କଲ ଗୃହେଁ କ୍ଷଣେ ଊର୍ଦ୍ଧ୍ୱ ପଥ
ଗୃହୁଁ ଗୃହୁଁ ଓହ୍ଲାଇଲା ଅନ୍ୟ ଦୁଇ ରଥ । ୨
ଅସିଥିଲେ ସେହୁ ରଥେ ପାଞ୍ଚ ପାଞ୍ଚ ବୀର
ସେନା ସଙ୍ଗେ ଯୁଦ୍ଧ ଅସ୍ତ୍ର ଖଡଗ ତୀକ୍ଷ୍ଣ ତୀର । ୩
କହିଲ ବୁଝାଇ ସବୁ ସେ ସୁରମାନଙ୍କୁ
ଉତ୍ତେଜିତ କରାଇଲ ତାଙ୍କର ମନକୁ । ୪
କହିଲ ରେ ! କାହିଁ ଅଛି ଦେଖାଅ ସେ ବୀର
ଛଡ଼ାଇବି ତାର ପଣ ରସିକ ପ୍ରବର । ୫

ଉନ୍ମୋଚି କୃପାଣ କୋଷ ବୀରଙ୍କ ହୁଙ୍କାରେ
କମ୍ପାଇଲ ବନଭୂମି କ୍ରୋଧାନ୍ଧ ଚିତ୍କାରେ । ୬
ହଲାଇଣ ଦୀର୍ଘ ବାହୁ ରୁହିଁଲ ଡଗଟି
ସତେକି ଖଇଳ ବକ୍ଷ ଉପ୍ତେ ଯିବ ଫାଟି । ୭
ଡାକ ଦେଲ କାହିଁ ଅଛୁ ? ଦେଖାଅ ସେ ବୀର
ଛଡାଇବ ତାର ପଣ ରସିକ ପ୍ରବୀର । ୮
ନର ଅଙ୍ଗେ ଘାତ ହୋଇ ଏତେ ତା ସାହସ
ଜଣାଯାଏ ମୋତେ କରୁଅଛି ପରିହାସ । ୯
ନ ଜାଣେକି ସେ ମାର୍ତ୍ତଣ୍ଡ ଇନ୍ଦ୍ରସୁତ ଶକ୍ତି
କାନ୍ଦିଅଛି ଛଡ଼ାଇବ ତା ପ୍ରେମ ଆସକ୍ତି । ୧୦
ଚତୁରଙ୍ଗ ବଳ ସଙ୍ଗେ ଦେଖ କଲ ଗତ
ହସୁଛନ୍ତି ବନଦେବୀ - ନିଭେ ତାର ପଥ । ୧୧
କିଛିକ୍ଷଣେ ପ୍ରବେଶିଲ ସେଠାବରେ ଯାଇଁ
କ୍ରୋଧ ଭାଷଣ ଆରମ୍ଭ କରନ୍ତି ଅନାଇଁ । ୧୨
ଦେଖିଲ ମଣ୍ଡପ ଶୋଭା କଳ୍ପନା ସୀମାକୁ
ଚକିତେ ଇନ୍ଦ୍ର ତନୟ ଟେକିଲ ଗ୍ରୀବାକୁ । ୧୩
ଜଡ଼ବତ ହୋଇ ଗଲେ ଇନ୍ଦ୍ରସୁ କିଙ୍କର
ଫାଟିଁଲି ପଞ୍ଜରା ତେଜି ଦର୍ପ ବିପୁଳର । ୧୪
ଗାରୁଡ଼ି ପ୍ରବୀଣା ମହା କାଙ୍ଗଲିକା ଆଗେ
ମହା ନାଗଶିଶୁ ଯେହ୍ନେ ରୁହଇ ଡରିଗେ । ୧୫
ବାରୁଣୀ ମନ୍ତ୍ର କାରଣା ପନ୍ଥୀଙ୍କୁ ରୁନ୍ଧି -
ସିଂହ ଯେଉଁପରି କେତେଣ ନପାରେ ପଳାଇ । ୧୬
ସେହିପରି ଚରସେନ ହୋଇଲ ଅଚଳ
ଧନ୍ୟ ଧନ୍ୟ ମହାମାୟୀ ନାରୀ ରୂପ ବଳ । ୧୭

ଝରିଲ ଏ ମନ୍ଦହାସୀ-ନବ ବିମ୍ବାଧରୁ
ଝଲେକଟନେ ଶିବଟ୍ଟିତ-ଜଗାବୁବେ ଧରୁ । ୧୮
ଝଡ଼ା ଏ ମଦନଶର-ଶାଣିତ ରସାଣ
ଦ୍ରବିବ ଚାହିଁରେ ଶତ୍ରୁ ହେଲେହେଁ ପାଷାଣ । ୧୯
କ୍ଷୀଣକଟି ପୃଥୁଳ-ନିତମ୍ବୀ ଅପଘନା
ଚକ୍ଷଣ ମଞ୍ଜୁଳ ମାର ମୋହିତ ଲଘନା । ୨୦
କେଳି ନିବନ୍ଧନ ପଟୁ ବାହୁ କେନି ଅଉ
ରଭ ବାଦେ ହୋଇଛନ୍ତି କି ଛନ୍ଦ ଅବତାର । ୨୧
ଶ୍ରୁତି ପାଦେ ଲକ୍ଷା ରେଖା ଦିଶଇ ଶୋଭିତ
କୋକନଦ ଭ୍ରମେ ଭୃଙ୍ଗେ ହୋଇବେ ଲୋଭିତ । ୨୨
ରଖିଛନ୍ତି ଏପରି କନ୍ୟା ଜନନୀ ବସୁଧା
ଦେଖିନାହିଁ ସ୍ୱପ୍ନେ କିବା-ଜାଗରଣେ ସୁଦ୍ଧା । ୨୩
ଚେତିଲ ସେ ଶଙ୍ଖସେନ ନାଗ ବାରପଣ
ନାରୀ ରୂପେ ଭୁଲି ଯାଉଅଛନ୍ତି ତାର ମନ । ୨୪
ଗୋପନେ ମନକୁ ମନ ଗାଏ କେତେ ଲାଜ
"ଦୋହଲାଇ ଦେଲି ମଣ୍ଡି ସମା ମୋତେ ଆଜ" ! ୨୫
ସୁମରଣା କଲି ନିଜ ଗୁରୁ, ଇଷ୍ଟ, ପିତା
ସମର ପ୍ରାଙ୍ଗଣେ ହେବ ଯେଉଁସବୁ କଥା । ୨୬
ବଦଳାଇ ଦେଲି ମାୟା, ମୋହ ମନ ଭାବ
ଫେରାଇ ଆଣିଲି ତାର ପୂରୁବ ସ୍ୱଭାବ । ୨୭
ଆରମ୍ଭିଲ ବାଦ କ୍ରମେ ଚନ୍ଦ୍ର ଭ୍ରୁ ସଙ୍ଗେ
ଗୂଢ଼ ବାକ୍ୟ-ଅର୍ଥ ଥାଏ ସମର ପ୍ରସଙ୍ଗେ । ୨୮



## ଅନନ୍ତ ଦୂରେ ରମ୍ଭା କିନ୍ନରୀ ଓ ଅପ୍ସରୀମାନଙ୍କ ଦ୍ୱାରା ଅନଙ୍ଗମଞ୍ଜରୀଙ୍କର ରୂପ ବର୍ଣ୍ଣନା

( ରାଗ—ରାମକେରୀ )

ତ୍ରିପୁର ଅପ୍ସରା କୁଳରେ      ନାହିଁ ଏମନ୍ତ ଛବି
ରସ ଶାସ୍ତ୍ରେ ବର୍ଣ୍ଣିନାହାନ୍ତି      କାହିଁ ରସିକ କବି । ୧
ରାଜବଂଶ, ଦେବ ଅଂଶରେ      ନାହିଁ ଏମନ୍ତ କାନ୍ତି
ଏ ପର୍ଯ୍ୟନ୍ତ ଧାତା ସୃଷ୍ଟିରେ      କାହିଁ କାହିଁ ନାହାନ୍ତି । ୨
ଜଣା ଯାଏ ଏହା ବିଧିର      ଅଟେ ନବ ସର୍ଜନା
କାହିଁକି ହେଲେ ଏ ରୂପସୀ      ଭବ ତାହାଙ୍କୁ ଜଣା । ୩
ଗୁରୁ ଛଟକଣୀ ଛଇଳ      ଯହିଁ ଯେତେ ଅଛଇ
ଏହା ହାବଭାବ କଳାକୁ      ଦେଖୁ ସର୍ବ ନୁହଁଇ । ୪
ମୃଦୁ ହାସେ ଯେବେ ଚାହିଁବ      ନେତ୍ର ଭଙ୍ଗୀ ତରଙ୍ଗେ
ଇନ୍ଦ୍ର, ଚନ୍ଦ୍ର, ବହ୍ନି, ମରୁତ      ଦହୁ ହେବେ ଅନଙ୍ଗେ । ୫
ସମାଧି ସାଧକ ଯତୀନ୍ଦ୍ର      ମନ ଯିବ ଓଲଟି
ବାହୁଡ଼ିବ ଏହା ପାଶକୁ      ପ୍ରେମ ରୂପ ପାଲଟି । ୬
ନବ ପଲ୍ଲବର ଅଙ୍ଗୁଳି      ଥରେ ଯେବେ ଏହାର
ପରଶ କରିବ ନିମିଷେ      ପୁଂସ ଅଙ୍ଗେ ଯାହାର । ୭
ବିଦ୍ୟୁଶକ୍ତି ପ୍ରାପ୍ତ ତାହାର      ଦେହ ଝଲସି ଯିବ
ଅଦେହ ପୀଡ଼ାରେ ନିଶ୍ଚୟ      ଜ୍ଞାନହରା ହୋଇବ । ୮
ରୂପବତୀ ବୋଲି ସ୍ୱପୁରେ      ଅମ୍ଭେ କରୁ ଗରବ
ଏହାର ମାଧୁରୀ ସେ ଗର୍ବ      ଅଳ୍ପ କରିଲ ଖର୍ବ । ୯

X X X X

ଯେଉଁ ଶୈଳ ଜେମା ପ୍ରେମରେ ତ୍ରିଲୋଚନ ବନ୍ଧନ
ଯାହାଙ୍କ ଶ୍ରୀପଦେ କରନ୍ତି କୋଟି ସୃଷ୍ଟି ବନ୍ଦନ । ୧୦
ସେ ମାୟା ମୂରତି ସଙ୍ଗରେ ହେବ କିଛୁ ତୁଳନା
ତାଙ୍କ ତନୁ ସମା ରୂପକୁ ନାହିଁ ନାହିଁ କଳନା । ୧୧

×   ×   ×   ×

ମର୍ତ୍ତ୍ୟକୁ ଆସିଲ ସିନା ଏ ପୂର୍ଣ୍ଣଚନ୍ଦ୍ର ବଦନା
ଦର୍ଶକ ଚକ୍ଷୁରେ ଝଡ଼ିବ ମାତ ପୂର୍ଣ୍ଣ ବେଦନା । ୧୨
ନନ୍ଦନ କାନନେ ଦେଖିଛୁ ପାରିଜାତ ସୁମନ
କୋମଳ ପଣରେ କଣିବ ଏହାର ଉପବନ । ୧୩
ବିକଶିତ ନୀଳ କୁମୁଦ କେତେ ସରେ ରହନ୍ତି
ଏ ଲଳନା ନେତ୍ର ଛବିକୁ ରୂପେ ହୋଇବ ଛୁଁଛୁ । ୧୪
ଅମ୍ଳାନ ପଙ୍କଜ ରହନ୍ତି ସିନ୍ଧୁ ବ୍ରଜ ସଦନେ
ସେ କୁସୁମ ସମ ନୋହିବ ଏହି ବାମା ବଦନେ । ୧୫
ସୁର ବାମାଙ୍କର କୁଟିଳ ଭଙ୍ଗୀ ବେଣୀ ତ ଅଛି
ଏ ଯୋଷା ଚିକୁର ଶୋଭାକୁ ତାହା ନୋହିବ ଲକ୍ଷି । ୧୬
କୁସୁମ ମାର୍ଗଣ ରହିଛି ମୀନକେତନ କରେ
ଏ ବାମା ଭ୍ରୂଲତା ପାଶରେ ଲଜ୍ଜେ ରହିବ ଡରେ । ୧୭

×   ×   ×   ×

ପ୍ରଶାନ୍ତ ଭାବରେ ବଙ୍କିମା ନୀଳ ସାଗର ଛବି
ଏହା ଅଙ୍ଗ ଗଢା ଅଧିକେ ଶତ୍ରୁ ପାଉନ୍ତି ଦ୍ରବି । ୧୮
ଗାମ୍ଭୀର୍ଯ୍ୟ ପଣରେ ପ୍ରବାଦ ଅଛି ଗରିଷ୍ଠ ନଭ
କିନ୍ତୁ ଏ ଅବଳା ଗାମ୍ଭୀର୍ଯ୍ୟ ତନୁସ୍ଥରେ ଦୁର୍ଲ୍ଲଭ । ୧୯

ଶିବ ସମ୍ମୋହନେ ଦେଖିଲୁ    ବିଷ୍ଣୁ ମୋହିନୀ ବେଶ
ଏମା ଅଙ୍ଗ ସେହି ତୁଳନା    ଦେଖାଯାଏ ବିଶେଷ । ୨୦
ମଦନ ଗରବ କରଇ    ଲଭି ସୁନ୍ଦରୀ ରତି
ଥରେ ଏ ଏମାଙ୍କୁ ଦେଖିଲେ    ତାହୁଁ ଛୁଟିବ ମତି । ୨୧

\+ \+ \+ \+

କ୍ଷମା ଦେବ ବିଶ୍ୱମୟୀ ମା !    ଅଳ୍ପ ବୁଦ୍ଧି ମୋହର
ଭବ ସ୍ୱାଧୀନତା ଦେଉଛ    ଖର୍ବ ଶକ୍ତି ତୁମ୍ଭର । ୨୨



## ଅନଙ୍ଗ ମଞ୍ଜରୀ, ଚନ୍ଦ୍ରପ୍ରଭାଙ୍କ ସହିତ ଚିନ୍ତସେନଙ୍କର ବାଦ ପ୍ରତିବାଦ

( ରାଗ—ବଙ୍ଗଳାଶ୍ରୀ )

ବୀର ଏକା ଜାଣେ ବୀରର ହୃଦୟ ସାଧୁ ଚିହ୍ନେ ସାଧୁ ମତ
ପ୍ରେମିକ ନୟନରେ ସକଳ ସୁନ୍ଦର ମଞ୍ଜୁଳ ପ୍ରକୃତ ଗତ । ୧
ଯାର ହୃଦ୍ ଭାବ ଯହିଁରେ ନିହିତ ସେ କର୍ମେ ସଦା ସେ ରତ
କୋଟି କୋଟି ଗ୍ରହ ତନ୍ତ୍ରେ ଲାଗିଅଛି ଏହି କ୍ରୀଡ଼ା ଅବିରତ । ୨
ଜୀବ ସମାଜରେ ସଂଗ୍ରାମ ବିଗ୍ରହ ନୁହଁ ଇଟି ନୂଆ କଥା
ଧାତା ସୃଷ୍ଟିକାଳୁ ଚଳି ଆସୁଅଛି ଦେଖା ଯାଉଅଛି ସର୍ବଥା । ୨
ତେତେଣେ ଚିନ୍ତସେନ ଚନ୍ଦ୍ରପ୍ରଭାଙ୍କ ସଙ୍ଗେ ବୀରତ୍ୱେ ରଚେ ବିଭାସ
କହୁଥାଏ ଯାଉଥାଏ ଦେଖିନ ଶୁଭ କ୍ଷଣେ ସମରେ ହେବେ ପ୍ରୟାସ । ୪

ଦେବଯକ୍ଷ-ସୁତ, କହେ ଅହେ ଭଦ୍ର ! ହୋଇ ତୁମ୍ଭେ ନରପତି
ଦେବତା ବିହାର ଭୂମିରେ କପର ବଢାଇଲ ବୀଡ଼ା ମତି ? । ୫
ଯେ ବନେ ବିଳାସ କରୁଥାନ୍ତି ନିତ ଦେବତା ଦେବୀ କିନ୍ନର
କେଉଁ ସାହସରେ ପ୍ରବେଶ କରିଲ ସେ କାନନେ ଅହେ ନର । ୬
ଏ ବନ ନିର୍ମିତ ରହିଛି ପ୍ରମାଣ ହୋଇ ଦେବ କଳପନା
ତେଣୁ ଦେବ ଭୁମେ ଦନୁଜ ମନୁଜ-ମାନଙ୍କୁ ଆସିବା ମନା । ୭
ଦେବ ବିନା ଅନ ପ୍ରବେଶିବ ଯେବେ କେହି କେବେ ଭ୍ରମମାନେ
ତେବେ ଶିରଚ୍ଛେଦ ଶାସ୍ତି ଟି ତାହାକୁ ରହିଛି ଅମ୍ଭ ବିଧାନେ । ୮
ସେହୁ ଦଣ୍ଡ ଅଜ ତୁମ୍ଭଙ୍କୁ ପ୍ରଯୁଜ୍ୟ ସୁମରଣା କର ଇଷ୍ଟ
ଏହିକ୍ଷଣି ଯାଇ ଶମନ ନଗରର ପ୍ରାଙ୍ଗଣେ ହେବ ପ୍ରବିଷ୍ଟ । ୯
ଏହା ଶୁଣି ଚନ୍ଦ୍ରପ୍ରଭ, କ୍ରୋଧ ଅଗ୍ନି ଶତଗୁଣ ପ୍ରଜ୍ୱଳିଲ
ତଥାପି ବୀରତ୍ୱ ପ୍ରବୋଧ ସମ୍ଭାଷ ବ୍ୟଙ୍ଗେ କହି ଲାଗିଲ । ୧୦
ବୀର ଜାଣିପାରେ ଅନ୍ୟ ବୀର ଦେହେ ଅଛଇ ଯେ କେତେ ବଳ
ଶିଷ୍ୟ ଗର୍ଭ ବିଦ୍ୟା ଜାଣନ୍ତି ଯେପରି ଅଗ୍ରମେ ଗୁରୁ କେବଳ । ୧୧
ସୁଦୂର ଅନନ୍ତ ବିହାରୀ ବିହଙ୍ଗ କହିପାରେ ବ୍ୟୋମ ଗତି
କହୁ ପାରିବେକି ସେ କଥା ସରସୀ ବିଳାସୀ ସାରସ ତତି । ୧୨
ବୋଇଲେ ସ୍ୱଜନ କିହୋ ରାଜସେନ. ମଣିଲକି ବିପର୍ଯ୍ୟ
ଧର୍ଷରେ ବିଷତ ହେଲେକି ଯକ୍ଷିଣୀ ଦେବଙ୍କ କରବେଭୟ ? । ୧୩
ଏହି ଧରଣୀରେ ଥିଲେ ଯଶ କେତେ କେତେ ନୃପତି କେଶରୀ
ଦେବତାମାନଙ୍କୁ ବାନ୍ଧି ଅଣିଥିଲେ ବନ ପଶୁ, ପକ୍ଷୀ ପରି । ୧୪
ଅଦ୍ଭୁତ ସ୍ୱରରେ ଖାଣ୍ଡବ ନନ୍ଦନ ଚୈତ୍ର ରଥ ପରି ବନ
ଲଭି ନାହିଁ ମୁଖେ କେଉଁ ଲାଳସାରେ ଅସ୍ପୃଷ୍ଟ ମର୍ତ୍ତ୍ୟ ଭୁବନ ।୧୫
ଅମ୍ଭ ସହିତରେ ନାହିଁଛି, ଦନୁଜେ ନଜାଣ କି ତାଙ୍କ ବଳ
କେତେଥର ତୁମ୍ଭ ଦେବତାଙ୍କୁ ଅଣି ଖଟାଇଲେ ପଦତଳ । ୧୬

ସ୍ୱର୍ଗେ ଭ୍ରମନ୍ତେ ଗନ୍ଧର୍ବ ସମାଜ ଦେବତାଙ୍କ ପରସ୍ପର
ତହିଁରେ ଯେ ପୁଣି ବଡ କଥା କୁହ ନଖର ନାଳ ବିଗ୍ରହ । ୧୭
ସ୍ମରଣ କରଣ ସେହି କଥାମାନ ଫେଡ଼ିଯାଅ ଏହି ବନ୍ଦ
ଦେବ ସଦା ଭୀରୁ ଶକ୍ତିହୀନ ବୋଲି ପାଶୋରି ଦେଉଛ ମନୁ ।୧୮

X X X X X

ଏ ବଚନ ଶୁଣି ମଘବା ନନ୍ଦନ କର ନିବେଶିଲ ତୂଣେ
ବେଗ ଚମକାଇ ଧରଣୀ କମ୍ପାଇ ଧନୁ ସଲଖିଲ ଗୁଣେ । ୧୯
ଏ ଉଚଟନ କଥା ଦେଖୁଥିଲେ ତହିଁ ବୀର ସୁତା ସଙ୍ଗ ବାଳା
ମଣୁଥିଲେ ଏହା ସତକି ସ୍ୱପନ କିଅବା ରହସ୍ୟ ମାଳା । ୨୦
ଜାଣିତ ନଥିଲେ ପ୍ରେମ ଚନ୍ଦ୍ରକାକୁ ବିନାଶିବ କାଳ ରାହୁ
ପୀରତି ଦୋଳାକୁ ଘୋର ବାତ୍ୟାପୁଞ୍ଜ ହଲାଇବ ଅସି କାହୁଁ । ୨୧
ସଙ୍ଗେ ସଙ୍ଗେ ଅଙ୍ଗ ଶୃଙ୍ଗାର ରହସ୍ୟ ହାସ୍ୟ ରସ ହେଲା ତ୍ୟକ୍ତ
ବୀରବାଳା ରକ୍ତ ଘୋର ବୀର ରସେ ପ୍ରକମ୍ପି ହେଲା ଉତ୍ତ୍ୟକ୍ତ । ୨୨
ଅସନ ପ୍ରତେଜ ଭୃତେ ଉଗ୍ର ହୋଇ କଲେ କଷ-କୋପ ମୂର୍ତ୍ତି
ପ୍ରେମ ଛଳ ଛଳ ଅପାଙ୍ଗ ବଦଳି ହୋଇଲା କୋଧାଗ୍ନି ସ୍ଫୁର୍ତ୍ତି ।୨୩
ବିବେଧେ ଭପିଲେ ଅନଙ୍ଗ ମଞ୍ଜରୀ ଚିତ୍ରସେନ ମୁଖ ଚାହିଁ
ଏତେ ଅଲଗୁକ ହେଲତେ ଗନ୍ଧର୍ବେ ମୁଖେ ଟିକେ ଲାଜ ନାହିଁ ।୨୪
କାଲିପର ପରି କଥା ଅଛି ମନେ କୌରବ କାମିନୀମାନେ
ଭଲ ସୁଥିଲେ ନସ ଏହ୍ନ କାନନରେ ଫଗୀଞ୍ଜ ସୌରଭ ଟାନେ ।୨୫
ରଜ ଯୋଷା କୁଳ କାନ୍ତ ସୋହାଗରେ ହୋଇଥିଲେ ଉନମତ୍ତ
ଦାଇବେ ସେବେଲେ ଭୁବନ୍ତ ଚିତ୍ରସେନ ଦୂରୁ ଶୁଣିଲ ସେକଥା ।୨୬
ଧାଦର୍ପି ଅନ୍ତରେ ପୂର୍ଣ୍ଣ ଅହଂକାରେ କରିଲ ଜଘନ୍ୟ କର୍ମ
ଧରି ନେଇଥିଲ କୁରୁ କୁଳବଧୂ ଏହା ଅଟଇ କେଉଁ ଧର୍ମ । ୨୭

ଏତେକ ଅନ୍ୟାୟ କରନ୍ତି କି କେହୁ
ବିବୁଧ ଶୁଦ୍ଧ ପୁରୁଷ ?
ପରନାରୀ ତନୁ ହରଣ କରିବା
ଏ ଅଟେ କେଉଁ ପୌରୁଷ ? । ୨୮

ଭୀମଙ୍କୁ ଟେକି ନେଲେ ତୋଳ ବାହାରେ
ଥିଲେ ପାଣ୍ଡବ ସକଳ
ଅର୍ଦ୍ଧ ଗଗନରୁ ଶୁଣିଲେ ବାମାଙ୍କ
ବାଧ ଦେଲା ବିହ୍ୱଳ । ୨୯

ମଧ୍ୟମ ପାଣ୍ଡବ ମାଧବ ବାନ୍ଧବ
ଗାଣ୍ଡିବେ ଯୋଖିଲେ ଶର
ତେଣୁ ଶିଖସେନ ହୋଇଥିଲ ପର
ମୃତ୍ୟୁ ଭୟରୁ ଥର ଥର । ୩୦

ଛିନ୍ନ ଦେହ ବୀର ଜାଣି ରଘୁବର
ଭକ୍ତ କୃତାଞ୍ଜଳି କରେ
ଅର୍ଜୁନ ସମ୍ମୁଖରେ କୃପା ଭିକ୍ଷା କଲ
ପ୍ରଶଂସିଲ ଏତେ ଭୀରୁରେ । ୩୧

ଯୁଧିଷ୍ଠିର ଠାକୁର ଦର୍ଶନ ଲଭନ୍ତୁ
ପାଇଥିଲ ସେଣୁ ପ୍ରାଣ
ଚେଣୁ ଅଲଜ୍ଜ ଅନ୍ଧ ପାଟେଣ ଅଜ୍ଞ
ଦେଖାଉଛ ମୁହଁ ହାଣ । ୩୨

× × × × ×

ଖାଣ୍ଡବ ଦହନେ କଣ ଅଛି ଗର୍ବ
ବୀରପଣ ଶିଖସେନ !

ପାରିଜାତ ପୁଲ୍ ଅଣିବା ସମୟେ
ନଥିଲକି ଗନ୍ଧବେଶ । ୩୩

ଦେବଙ୍କ ମହତ- ପଣ ଜଣା ଅଛୁ
ଦମୟନ୍ତୀ ସ୍ୱୟମ୍ବରେ
ମର୍ତ୍ତ୍ୟ ସମାରୂପ ଲଲସ୍ତେ ଧରିଲ
ନରରୂପ କପଟରେ ; ୩୪

ଦେବତାଏ ଅଟ ବଡ ଅବିଶ୍ୱାସୀ
କାମୁକ ପୁଣି ନିର୍ଲଜ
ଗୁରୁପତ୍ନୀ ନରୁ ଗ୍ରେହ କରିବାକୁ
ମଣିଲ ବଡ ସହଜ । ୩୫

ଦେବରାଜ ହୋଇ ତୁମ୍ଭ ପିତା ଭଦ୍ର
ହୋଇଚନ୍ଦ୍ର ପଥ ଭ୍ରଷ୍ଟ
ଋଷି ଅଭିଶାପେ ସୌମ୍ୟ କାନ୍ତି ହେଲା
ଶରଦନ ପାଇଁ ନଷ୍ଟ । ୩୬

ତାହାଙ୍କ ନନ୍ଦନ ତୁମ୍ଭେ ଶଚୀସେନ
ଲଭିବ ଅଙ୍ଗେ ସେ ଦଶା
ଭଲ ଯୋଗ ଥିଲେ ଫେର ଯାଅ ଏଥୁ
ନହୋଇଣ ଲୋଭବଶ । ୩୭

ଦେବତାଙ୍କ ଗୁଣ ଜଣାଅଛି ମୋତେ
ନଷ୍ଟର ଅଯଥା କଳି
ଶକ୍ତି ଅଛି ଯେବେ ମୋ ସଙ୍ଗେ ସମର
କର ଯିବ ଯେବେ ବଳି
ତାପରେ ମୋ କାନ୍ତ ରଣ ପ୍ରାଙ୍ଗଣରେ
ହୋଇବେ ଦଣ୍ଡାୟମାନ

କେତେବେ ସିନା ମର୍ତ୍ତ୍ୟ- ଧୀର ରାମା କୁଟିଳ
ଚେଷ୍ଟ ରହିବ ମୋ ମାନ । ୭୯

× × × × ×

ଶୁଣି ରଘୁସେନ ଅଶ୍ରୁଧା ଢୋଳାଇଲେ
ମର୍ତ୍ତ୍ୟ ସ୍ୱମା ଖାସ୍ ପଣ
ସ୍ୱା ଲଢ଼ିବେ ରଣ ରମଣୀ ସହିତ
ଭାବିଲେ ଅନ୍ତରେ ଧନ୍ୟ । ୮୦
ଦେବମାନ ପ୍ରୀତି- କର ସୌନ୍ଦର୍ଯ୍ୟରୁ
ହଟାଇ ଅଣିବା ମନ
ନୁହଁଇ ସହଜ କିଏ ବା ନ ଇଚ୍ଛେ
ଧରିବ ହଜ ସୁମନ । ୮୧

ଧୀରେ ହରେ ମଧୁ ଭୃଙ୍ଗ ସୁମନରୁ
ନଦିଏ ତାହାକୁ ଦଳି
ମତ୍ତ କରୀ କେବେ କରିଣୀ ସଙ୍ଗତେ
କରି ନଥାଏ ତ କଳି । ୮୨
ରଣ ପ୍ରାଙ୍ଗଣରେ ନଥାଏ ବୀରର
ସ୍ନେହ ପ୍ରେମ ଦୟା ମାୟା
ଯହିଁ ଏହି ଭାବ- ମାନ ଦେଖାଯାଏ
ସେହି କାପୁରୁଷ କାୟା । ୮୩
ଯୋଗେଶ୍ୱର ହରି କହିଥିଲେ ଏହା
ଅର୍ଜ୍ଜୁନେ ଭାରତ ଯୁଦ୍ଧେ
ସ୍ୱଧର୍ମେ ଶରଣ ଅଛି ବୋଲି ଶାସ୍ତ୍ର
ମନା କରିଛନ୍ତି ବୁଦ୍ଧେ । ୮୪

ଏହା ଶୁଣି ବାମା    ଅଙ୍ଗରେ ରଣ
'କରଣେ ହେଉ ପ୍ରସ୍ତୁତ
ଅଦୃଶ୍ୟ କହିଲ    ଚିତ୍ରସେନ କର୍ଣ୍ଣେ
ବାର୍ତ୍ତାଏ, ସୁରଗ ଦୂତ । ୪୫
ନିଜର ନଗର    ଯିବାର ନମାଳ
ଏ ଅଟନ୍ତି ଦେବ ବଣୀ
ପାଇଛନ୍ତି ବର    ଅଚ୍ଛେଦ ଏ ଦେହ
ନାଗ ଅଙ୍ଗେ ଲଗିଥ ଦଣ୍ଡି । ୪୬
ସେ ବଚନ ମାନି    ଚିତ୍ରସେନ ମନ୍ତ୍ରେ
ମାରିଲ ମୋହନ ଶର
ଅଚେତନ କରି    ତହିଁ ଲୋଟାଇଲା
ଯାଇ ହେମ ସମାଦର । ୪୭
ନାଗ ନନ୍ଦିନିଙ୍କୁ    ଦସ୍ୟୁ କରି ରଥେ
ବସାଇଲ ଚିତ୍ରସେନ
ନେଇ ପ୍ରିୟାଗଣ    ଚଳିଲ ସ୍ୟନ୍ଦନ
ଭିତରେ ଆକାଶ ମାର୍ଗେଣ । ୪୮
ଭ୍ରୁଆଏ ମଦନ    ଧନ୍ୟ ନାରୀ ଜାତି
ଧନ୍ୟ ତାଙ୍କ ମାୟା କ୍ରି
ପୁରୁଷ ମୋହନ    ପାଇଁ ଧାତା ସୃଷ୍ଟି
କରିଛନ୍ତି ନାରୀ ମୂରତି । ୪୯
ଅନୃତକୁ କ୍ଷମା    ପ୍ରଶଂସା କରନ୍ତି
ବୃଥା ଟାରେ ନରସୁର
କଦାପି ନହେଁ ତା    ପ୍ରମଦାର ପ୍ରୀତି
ଆଦର ଠାରୁ ନଟର । ୫୦

ଚପଳ ଚନ୍ଦ୍ରମା- ତାଙ୍କୁ ଶୋଭିକର
ଅଙ୍କେ ରମଣୀ ତାରା
ହାବ ଭାବ ଭଙ୍ଗି ଅପାଙ୍ଗ ଭଙ୍ଗୀରେ
ମିଶିଗଲେ ଏବେ ଠାଣି । ୫୦

× × × × ×

ଭୂତ, ପ୍ରେତ, ପିତୃ ନନ୍ଦିତ ପୁରକୁ
ପାରି ହୋଇଗଲା ରଥ
ପରଶ କରିଲା ମନ୍ଥର, ସୁନ୍ଦର
ପ୍ରଶାନ୍ତ ନିର୍ମଳ ପଥ । ୫୧
ସ୍ୱର୍ଗ ଗଙ୍ଗା ତଟରେ ରଥ ଯାଉଁ ଯାଉଁ
ପାହିଗଲା ବିଭାବରୀ
ସ୍ୱଚ୍ଛ ସୁନ୍ଦରୀ ଅସନ୍ତ୍ର ସଧୀରେ
ପ୍ରକ୍ଷାଳନେ ସ୍ୱକବରୀ । ୫୩
ଭାବେ କବି ଏଥେ ସେ ରୂପ ମାଧୁରୀ
ପାଲେ ଗଢ଼ା କି ପ୍ରତିମା
ଢଳ ଢଳ ନେତ୍ର ଛଳେ ସ୍ଥିର ଅଶ୍ରୁ
ନଲଂଘେ ମର୍ଯ୍ୟାଦା ସୀମା । ୫୪ ❋

---

❋ ଗତ ତା୨୩।୭।୭୦ରିଖ ଅପରାହ୍ଣ ଘଣ୍ଟା ସମୟେ ଉତ୍କଳ New capitalର ସୁରମ୍ୟ ହର୍ମ୍ୟ ସେକ୍ରେଟେରିଏଟ ଅଫିସର ପଛ ପଟରେ ଥିବା ସମୟରେ ସମସ୍ତ ଗଗନ ଦକ୍ଷିଣ ପଶ୍ଚିମ ଖଣ୍ଡଗିରିର ଶୈଳ ଶିଖରଠାରୁ ଦକ୍ଷିଣ ପୂର୍ବ ଆମ ସାହିତ୍ୟ ଏକାଡେମୀ ଉଚ୍ଚ ସୌଧର ଉପର ବ୍ୟାପୀ ଈଷତ୍ କୃଷ୍ଣବର୍ଣ୍ଣ ବାରିବାହ ରାଜ୍ୟ ବିସ୍ତାର କରିଥିଲା । ପିତାଙ୍କର ସାମ୍ରାଜ୍ୟ ବିଭୋଗ ଦେଖି, ଅଲ୍ୟଳା ଦୁହିତା ଚପଳା କେବେଳ କେବେଳେ ନିଜର ଛଟକ ହୁହାଣୀ ଦେଖାଇ ଦେଉ-

ଖସି ଦୋଳୁଅଛୁ ବାସୀ ଫୁଲମାନ
କବରୀ ଅଙ୍ଗରୁ ତଳେ
ହସି ନ ହସିଲ ପରି ମୁଖ ଦିଶେ
କର ଅଛୁ ବାସାଞ୍ଚଳେ । ୫୫ ❋

ଢଳା ଲୁଣ୍ଠ ପର ଝଲା ହେମ ଝରୀ
ବଳକି ଦିଶେ ସେ ଅଙ୍ଗେ
ଶଶି ପ୍ରଭାମାଏ ଗଛ ଅବା କଲେ
ରସେ ପୁଣି ଏ ପ୍ରସଙ୍ଗେ । ୫୬ ❋

\+ \+ \+ \+ \+

ଆକାଶ ତୋରଣ ପାରି କରି ନେଇ
ରଖାଇ ନନ୍ଦନ ବନେ
ଅଦେଖିଲ ସବେ ଯତନେ ରଖିବେ
ଗୁପତେ ନୃପ ନନ୍ଦନେ । ୫୭

---

ଥିଲେ । ବନ, ବଲ୍ଲୀ, ଲତା, ଗୁଳ୍ମ, ଶଇଳ ବକ୍ଷ ପାଦପ ଅତେ ଦୃଷ୍ଟି ଯିବାରୁ ମନେ ପଡ଼ିଗଲା ଠାକୁର ଜଗନ୍ନ ଦେବଙ୍କର ଲଳିତ ମଧୁମୟ ପଦ "ମେଘୈ ମେଦୁର ମମ୍ବର ବନ ଭୁବ, ଶ୍ୟାମ ସ୍ତମାଳ ଦ୍ରୁମୈ" ଟିକି ଏ ଭାବ ସଙ୍ଗରେ ଅଉ ଏକ ଭାବ ଆଣି କବି ସମ୍ରାଟ ଭଞ୍ଜଙ୍କର ଉପମା ସୂଚନେ ଗୋଟିଏ ପଦ ସମ୍ମୁଖରେ ଥୋଇଦେଲା:— "ଦେଖିଲା ବାଳାକୁ-ସୁପ୍ରେମ ଶୀଳାକୁ" ତା ସଙ୍ଗେ ସଙ୍ଗେ କବିବର ରାଧା ନାଥଙ୍କର ପଦ ମଧ୍ୟ ଉପମାରେ ସାଙ୍ଗ ହୋଇଗଲା "ଅଙ୍ଗେ ବଙ୍ଗେ ପୁଣି ମଗଧେ ମୈଥିଳେ ଦେଖିଛୁ କେତେ ସୁନ୍ଦରୀ" ଏମାନଙ୍କ ସଙ୍ଗେ ମୋର ଉପମା ଉକ୍ତ ୫୪, ୫୫, ୫୬, ତିନୋଟି ପଦ ଉଦୟ ହେଲା । ତେଣୁ ବର୍ତ୍ତମାନ ଗ୍ରନ୍ଥସ୍ଥ ମୋର ଅନଙ୍ଗ ମଞ୍ଜିରୀର ଦେବ ବାଳାଙ୍କ ପାଖକୁ ପଠାଇ ଦେବାକୁ ସହଜ ମନେ କଲି । ପାଠକେ କ୍ଷମା ଦେବେ ।

# ଅନଙ୍ଗ ମଞ୍ଜରୀଙ୍କର ଅଚେତ ଅବସ୍ଥା

( ରାଗ:—କଳହଂସ କେଦାର )

ପଞ୍ଚିଲ ଜବାଧର୍ମ ଧରଣୀ ତଳେ
ଗନ୍ଧର୍ବ ପଞ୍ଚ ବାଣ ମୋହନ ବଳେ
ସ୍ୱକର୍ମ ଫଳେ ହୁଏ ଏମନ୍ତ ଦଶା
ପାଶରେ ନାହାଁ କେହି ମାତ୍ର ଭରସା । ୧
ଅଣିଲ ନାହିଁ ଜଣେ ସଙ୍ଗିନୀ ସଙ୍ଗେ
ରମିବ ବୋଲି ଏକା ବନେ ଧୂରଙ୍ଗେ ।
ଲତା ମଣ୍ଡପ ବାହ୍ୟ ଶୋଇଛନ୍ତି ଏକା
ଚନ୍ଦ୍ର ପ୍ରତିମା ପରି ଯାଉଛନ୍ତି ଦେଖା । ୨
ଦେଖନ୍ତି ବନଚର ବନ ଲତିକା
ଯେ ଶୁଣିଥିଲେ ଆଗେ ପ୍ରେମ ଗୀତିକା
ନିସ୍ତବ୍ଧ ଦଶ ଦିଗ ନନ୍ଦନ ବନ
ହୁଅଇ ବେଳେ ବେଳେ ମର୍ମ୍ମର ସ୍ୱନ । ୩
ତରୁରେ ତରୁ ଅଙ୍ଗ ହୋଇଣ ଘଷି
ଶୁଭଇ ସତେ କିଏ ବଜାଏ ବଂଶୀ
ସୁଦୂର ଶୈଳେ ଶୁଭେ ମୟୂର ଡାକ
ନଚାଇ ମୟୂରୀକୁ ରଙ୍ଗିଣୀ ଯାକ । ୪
କ୍ରମେ କାନନ ହୋଇ ଗଲା ନୀରବ
ରଜନୀ ବକ୍ଷେ କଲା ନୃତ୍ୟ ଭୈରବ
ଧୀରେ ଧରିଲେ ତାରା ମଳିନ ଗତି
ବିଷାଦେ ଝାଉଁଳିଲେ ରଜନୀ ପତି । ୫

ତୋମାଙ୍କୁ ଦେବାପାଇଁ ହିଲେ ଭରସା
ଅସିଲେ ବନ ରୁଚୀ ପାଟେସ୍ୱ ସହସା
ସେ ତନ ଦେବାଙ୍କର ପରମା ସଖୀ
ନାବତେ ଯାଙ୍କୁ ପାଟେଶ ଥାଆନ୍ତି ରକ୍ଷି । ୬
ଛାଟ ରହିଲେ ସ୍ନେହ ତୋମା ପାଶରେ
ମାନନ ସହଚସ୍ତ୍ର ସ୍ନେହ ଅନ୍ତରେ
ତୋମ ଦୁଃଖରେ ସବେଁ ଲଭିଲେ ଦୁଃଖ
ହରଷ ନ ଦିଶିଲା କାହାର ମୁଖ । ୭
ସେବା ତାଙ୍କର ଅଟେ ବଡ଼ ଧରମ
ଯେପରି ପୂର୍ଣ୍ୟ ଜନ- ଙ୍କର କରମ
ମହାତ୍ମାମାନେ ହିନା ଯାଚି କଲ୍ୟାଣ
କରନ୍ତି, ସମାଜର ହିତ ବିଧାନ । ୮
ସାଧୁ ଯେ ପର ଦୁଃଖେ ହୁଅଇ ଦୁଃଖୀ
ଖଳ କେତେ ଦେଖି ହୁଅଇ ସୁଖୀ
ସକଳ ପୁର ମହା- ଜନର; ପର
ଦୁର୍ବଳ ଘଟେବ ହିନା ଆଟଣା ଘର । ୯
ସ୍ୱଦେଶପ୍ରେମୀ ସିନା ଦେଶର ପାଇଁ
ଦିଅଇ ନିଜ ଶକ୍ତି ଆଗ ଖଟାଇ
ଲଭା, ପାଦପେ ଯେସନ୍ତେ କଷଣ ସହି
ଥାଆନ୍ତି ଅନ୍ୟ ହିତେ ଶରୀର ବହି । ୧୦
ନାହିଁ ସେ ଭଳେ କେହି ତେଣିଏ ପ୍ରାଣୀ
କପଟ ବେଶେ ନେବ ସ୍ୱାର୍ଥକୁ ଟାଣି
ପୁଣି ନାହିଁ ଯେ ତହିଁ ଉଲ୍ଲୋଚ ବିଧି
ନ ହେଲେ ନଡ଼ହାନିବ କାମନା ସିଦ୍ଧି । ୧୧

ସେ ବନବାସୀ ସବେଁ ଉଦାର ମନା
କାହାର ଥିଲେ ନାହିଁ ଆନ କାମନା
ସେବା କରିଲେ ମିଳି ସବୁଠି ଆସି
ସତେ କି ଉଆସର ସୋହାଗୀ ବାସୀ । ୧୨

× × ×

ଚଳୁଏ ଗୋଟି ଗୋଟି ଦରବ ପର୍ଣ୍ଣ
ଅସ୍ପଷ୍ଟେ ଦେଖିଲେ ସେ ହୋଇ ବିବର୍ଣ୍ଣ
ଲୋତକ ଛଳେ ଝପ- ଝପ ନିହାର
ବରଷା କଲେ ଘନ ଭାବି ଅକାର । ୧୩
ସ୍ଥିର ସ୍ତବକେ ଫୁଲ ନ ପାରି ବସି
ଗୋଟିକି ଗୋଟି ଥିଲେ ପଡ଼ିଲେ ଖସି
ପାରିଲେ ନାହିଁ ସହ- ସୁମନେ ହସି
ଭୁଙ୍ଗେ ବାହୁଡ଼ି ଗଲେ ନ ଇଚ୍ଛି ରସି । ୧୪
ସଙ୍ଗ ଲଳନା ପୂର୍ଣ୍ଣ ବେଦନା ପାଇ
ଭାବନ୍ତ ଏକେ ଏକେ ସେ ସ୍ଥାନେ ଥାଇ
ପ୍ରସ୍ତାବମାନ ଶେଷେ କରିଲେ ସ୍ଥିର
ସେଷିଲେ ଉଷା ପାଶେ ଏ ଦୁଃଖ ଗୀର । ୧୫



# ପଞ୍ଚମ ସୋପାନ

## ଅନଙ୍ଗ ମଞ୍ଜରୀଙ୍କର ଅଚେତା ଅବସ୍ଥାରେ ଉଷାଙ୍କର ଆଗମନ ଓ ସଖୀମାନଙ୍କର ପ୍ରବେଶ

( ରାଗ—ରସକୁଲ୍ୟା )

ଚଳେ ରାଜପୁତ୍ର ଗନ୍ଧର୍ବ ରଥେ
ଚନ୍ଦ୍ରମା ଲୁଚିଲେ ବାରୁଣୀ ପଥେ
ତାରକା ବିଷାଦେ ମୁଦି ନୟନ
ମୁଦ ତେଜି ଭଜି ନିଜ ଅୟନ
ଢେମା ବିଷାଦରେ ଦୁଃଖୀ ଯେ
ଦଚ୍‌ଦନ୍ତୀ ନାୟିକା ଦିଗକୋଣେ ଗୁହ୍ନି
ହୋଇଲେ ମଳିନମୁଖୀ ଯେ । ୧

ଦେଖି ରାମାରତ୍ନ ଦୁଃଖକୁ ଦୂରେ
ବାଦଲେ ଧାଇଁ ଚଲ ସ୍ୱାମାଦ୍ର ପୁରେ
ପିକ ଉଡ଼ିଗଲା ମଳୟାଚଳେ
କହିଗଲା କୁଞ୍ଜ ମଣ୍ଡପ ଦଳେ
ଜଟିଳା ରହୁ ଏଠାଇଁ ଯେ
ଯାଉଅଛନ୍ତି ମୁହିଁ ବସନ୍ତେ ବୁଝାଇ ମଳୟେ ଅଣିବା ପାଇଁ ଯେ । ୨

ରୂପ ଗର୍ବ ମଦେ ହେଲ ହରଷ
ଅବ୍ଜ ମୁଖେ ଦଶେ ମୁକ୍ତା ହସ
ବନ୍ଧୁ-ବଦନାର ଉଦ୍ଧାର ଅଶେଷ
ବନ୍ଧୁ-ବାନ୍ଧବୀ ଥାଇଁ ଘର ବାସେ
ଝାଉଁଳି ପଡ଼ିଲା ଦୁଃଖେ ଯେ
ଉଷାଦେବୀ ପାଶ ଗୁପତ ସନ୍ଦେଶ ବହିଗଲା ବାୟୁ ମୁଖେ ଯେ । ୩
ଉଷାରାଣୀ ଏହୁ ବାରତା ପାଇ
ବାହାରିଲେ ଛାଡ଼ି ଦ୍ୱାର ଫିଟାଇ
ସେ ପୁର ପ୍ରହରୀ ପ୍ରଣତି ତସ୍ୱ
ପ୍ରଣମି ଦେବୀଙ୍କ ଶ୍ରୀମୁଖରେ ତ୍ୱସ୍ୱ
ଉଡାଡ଼ ହୋଇଲ ପଟୁଁ ଯେ
ଓହ୍ଲାଇଲେ ଦେବୀ ସତ୍ୟ ଶାନ୍ତି ପାଇଁ
ମର୍ତ୍ତ୍ୟ ଅଗମନ ରଥୁ ଯେ । ୪
ପଦବ୍ରଜେ ଦେବୀ ଚଳେ ଗମନ
ଦର୍ଶନେ ଉଦ୍‌ବେଗ ସବୁର ମନ
ଭଣାଇଲେ ସର୍ବେ ଦେବୀ ଶ୍ରୀପଦେ
ତେମା ସଉଛନ୍ତି ଦୋଳ ଷପଦେ
ଆସ ଦେବୀ ସିମନ୍ତିନୀ ଗୋ !
ଅନୁକୂଳନେହେ ତେମାଙ୍କୁ ଅନାଇ ହୁଅନ୍ତୁ ସଞ୍ଜାଦାୟିନୀ ଗୋ । ୫
ଛଳଛଳ ନେହେ ଲତା ପଲ୍ଲବେ
ସଜଳ ନମ୍ରନା ପକ୍ଷୀ ସରବେ
ହୀମେ ଜରଜର କଅଁଳ ତନୁ
ଓହ୍ଲାଇ ଆସି ଏ ବୃନ୍ତ ଆସନୁ
ସଜ ଭୁମନ ସୁନ୍ଦରୀ ହେ

ସ୍ୱାଗତ ସମ୍ଭାଷେ ଦେବୀ ଶ୍ରୀମୁଖରେ
ଜଣ୍ଣ ଦେଲେ ଅର୍ଘ୍ୟ ଧରି ଯେ । ୬
କୁମ୍ଭାରୁଆ ବାମା ତାମ୍ବୁଳ ଦେଇ
ଛତ୍ରୀ କାମିନୀ ନିକୁଞ୍ଜ ମଝି
ଗାଇଲେ ଦେବୀଙ୍କ ମଙ୍ଗଳ ଗୀତ
କୌଶଳେ ଫୁରିଲା ସେ ଶୁଭ ତାନ
ଉଠିଲେ ଉଗତ ବାସୀ ଯେ
ହୋଇଲେ ସକଳେ ନିର୍ମଳ ମାନସେ
ଦେବୀ ଦର୍ଶନ ପ୍ରୟାସୀ ଯେ । ୭
ପିକ ହଳଷ୍ୱରେ ଧୀର ସମୀର
ଅମି ଜାବେଙ୍କର ଧୋଇ ଶରୀର
ଶୀତଳ କରିଲା ସୁଗନ୍ଧପବନ
ଉଷା ପାଦ ବନ୍ଦ ମାନି ବଚନ
ଉଚ୍ଛବ ବ୍ୟଞ୍ଜନ ଧରି ସେ
ହେମା ଦେଉଳର ପାଇଁ ପାଶେ ରହୁ ଖଟିଲ ସଙ୍ଗୀ ପଦ ଦେ । ୮
ବାଦଲ ଖଣ୍ଡକୁ ମାନି ହିମାନି
ଆସିଥିଲ କାହା କଥା ନ ମାନି
ସୂର୍ଯ୍ୟ ଦେଖି କୃପା କଣା କରି ବରଷା
ଅଦ୍ରି କଲ ବନ ପର୍ବତ ରସା
ପାଇ ସେ ଅମୃତ ରସ ଯେ
ଅନଙ୍ଗ ମଞ୍ଜରୀ ଦେଖା କମେ ଅସେ
ସକଳେ ହୋଇଲେ ହରଷ ଯେ । ୯
ଉଷା ନିଜ କର ପଲ୍ଲବ ନେଇ
ହେମାର କର୍ପୂର ଅଙ୍ଗେ ଲଗାଇ

କହିଲେ କଲ୍ୟାଣୀ ଉଠ ଚଞ୍ଚଳ
ତୁମ୍ଭ ପାଇଁ ବ୍ୟସ୍ତ ଜନେ ସକଳ
ଦୁଃଖୀତା ନ ହୁଅ ସତୀ ଗୋ ।
ବ୍ରହ୍ମମୟ ସୃଷ୍ଟି ବ୍ରହ୍ମାଣ୍ଡ ମଧ୍ୟରେ
କେ ନାହିଁ କେ ଭାବା ପତି ଗୋ । ୧୦

ଉଠ ଉଠ ଧନ୍ୟ ଉଠ ବଦନ
ନୈସର୍ଗିକ ପ୍ରେମ କର ସ୍ମରଣ
ଚିଦାନନ୍ଦ ଶକ୍ତି ହେବ ସଞ୍ଚୟ
ଦୂରେ ପଳାଇବ ମୃତ୍ୟୁକ ଭୟ
ଦର୍ଶିବ ଗନ୍ଧର୍ବ ପଥ ଯେ
ନିଜ ସଙ୍ଗେ ନିଜେ ପରିଚିତ ହେଲେ ପୂର୍ଣ୍ଣ ହେବ ମନୋରଥ ଯେ । ୧୧

ଜୀବ ପରମଙ୍କୁ କର ସ୍ମରଣ
ଆତ୍ମା ଅନାତ୍ମାର ଭେଦ କଅଣ
ଆସିଅଛ କାହୁଁ କେଣିକି ଯିବ
ଚଲିବେଳେ ପଥେ ସଂଗେ କେ ଥିବ
ଏକଥା ଭାବିବ ଯେବେ ଗୋ
ଇନ୍ଦ୍ରଜାଲ ଖେଳେ ନଟ ନଟୀ ମେଳେ
ଦୁଃଖ ନ ବାଧିବ ତେବେ ଗୋ । ୧୨

× × ×

ଛାଡ଼ି ହୋଇ ଏଣେ ଚତୁର କାଳ
ବୁଲି ଉଠି ଗ୍ରାମ ନଗର ପାଳ
କହିଲ ସକଳେ ଏହୁ ଖବର
ଜଡ ଜଗତର ହେ ନାଥ ନର

ଉଷା ଅନିରୁଦ୍ଧ ଭଳିବେ ଯେ
ଯିବାପାଇଁ ମାଉଟାଉ ସେ ଦେଖିଲେଣି ଦର୍ଶନଙ୍କର ସରବେ ଯେ । ୧୩
ଦେଖେଣି, ରାଜପୁର ଦ୍ୱିତଳ ଚୂଳ,
ସ୍ଫଟିକ ପାବଚ୍ଛ - ସରସୀ କୂଳ
ନାଗେଶ୍ବରବନ ତରୁ ଶିଖର
ଲତା ବିମଣ୍ଡିତ ମାଳଭୂଧର
ଦର୍ଶିଲା ଫଳିଲ ଦୃଷ୍ଟର ଯେ
ଭାବେନ୍ତି ସଲୀଳ ସକ୍ର ମଦବାତ ପ୍ରସରିଲା ରାଜପୁରେ କଥ । ୧୪
ଅମରାବତୀରେ ନାହିଁ ତୁଳନା
ଚତୁର, ସେ ରାଜବଂଶ ଲଳନା,
କନ୍ଦର୍ପେ ଯାଙ୍କ, ଦୋହ୍ର ଜଳନା
ଚଉଦଗ ତାଙ୍କ ନେତ୍ର ତୁଳନା
ଶୋଭୁଥିଲେ କୋମଳାଙ୍ଗୀ ଯେ
ଭାତପୁରେ ରତ୍ନ ପଲଙ୍କ ତୁଳିରେ ନିଦ୍ରା ବିଭ୍ରମ ଗଲା ଭାଙ୍ଗିଯେ । ୧୫
ଚେମା ଅଙ୍ଗରକ୍ଷୀ ବେଶ ଧାରିଣୀ
ଚାମର ବ୍ୟଜନ ଧର ଧାରିଣୀ
ଉଦ୍ୟାନ ଭ୍ରମଣ ପ୍ରେମ ସଙ୍ଗିନୀ
ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗିଣୀ
ଉଠିଲେ ସଙ୍ଗିନୀକୁଳ ଯେ
ଦେଖିଲେ ତେମାଙ୍କୁ ପ୍ରସାଦେ ନାହାନ୍ତି
ହୋଇଲେ ଭୟେ ଅକୁଳ ଯେ । ୧୬
ଖୋଜି ନ ପାଇଲେ ପୁର ବାହାର
ବସନ୍ତ ନିବାସ ଶାନ୍ତ ଅଗାର
ଉଦ୍ୟାନ ମଣ୍ଡପ ତଡ଼ାଗ ଘାଟ

ତରଙ୍ଗିଣୀ ତଟ ଭ୍ରମଣ ବାଟ
ଭ୍ରମି ହେଲେ ହୀନ ବଳ ଯେ
କାମାତୀ ସହିତ କେମା ଯେ ନାହାନ୍ତି ପଡ଼ିଲ ଏହୁ ଚହଲଯେ । ୧୭
ପିଞ୍ଜରୀ ପାଳିତ ଶାରୀ ଓ ଶୁକ
ସଙ୍ଗନୀ କୁଳର ଦେଖିଲେ ଦୁଃଖ
କହିଲେ ନ ହୁଅ କେହୁ ବିମନା
ହୋଇଛନ୍ତି ଦେବୀ ବନ ଗମନା
ଦେଖିଲୁ ଏଠାରେ ଥାଇଁ ଯେ
ଅନନ୍ଦେଦମ୍ପତି ଏହିପଥେ ଗଲେ ନିଶ୍ଚି ବେଶୀ ହୋଇନାହିଁ ଯେ-୧୮
ଅଭିସାର ବେଶ ଥିଲେ ସେ ସାଜି
ପରସ୍ପର ହାବ ଭାବରେ ମଜି
ନେଇଛନ୍ତି ସଙ୍ଗେ ଧୂର୍ତ୍ତି ତୁରଗ
ଯୁଦ୍ଧ ଅସ୍ତ୍ର ଶସ୍ତ୍ର ତୀକ୍ଷ୍ଣ ଖଡ଼ଗ
ସଙ୍ଗେ ନାହିଁ ଆଉ କେହୁ ଯେ
ପ୍ରଭାତ ନହେଉ ଫେରିବେ ନବରେ କହିଗଲେ ବୋଧଦେଇ ଯେ-୧୯
ଏହା ଶୁଣି କେତେ ଚତୁରୀ ଦାସୀ
କାନନେ ଯିବାକୁ ହେଲେ ପ୍ରୟାସୀ
ସ୍ଥିର ହେଲେ ବସି ସକଳ ଧୀରା
ଯାଉ ପ୍ରଭାବତୀ ମଳୟା ବୀରା
ଅନ୍ତରଙ୍ଗା ଏ ହେମାର ଯେ
ପା ରୂପପ୍ରଭାବେ ବିମୋହି ଉଭବେ ନିଜେ ରତିକାନ୍ତ ମାର ଯେ-୨୦
ବେନି ସହଚରୀ ହେଲେ ବାହାର
ଓହ୍ଲାଇ ବଳୟ ମନ୍ଦିର ଦ୍ୱାର
ପରିଧାନୀ ବୀର ଭୂଷା ଯତନେ

ଅଚେତ ହେଲେ ବେନୀ ହସ୍ତ ରତନେ
ନବରୁ ବାହାର ଉବେଗ ଯେ
ଲଜ୍ଜା ବିହ୍ୱଳାରେ ଅଦୃଶ୍ୟ ହୋଇଲେ ଚାହାଙ୍କ ନୟନ ମେଦେଶେ-୨୧
ଦାସୀଙ୍କ ଖୋଜିବା ଅଗୁ ବିଳମ୍ବେ
କୁମାର ଥିଲେ ଯେ ଶଙ୍ଖାର ବଣୀ
ନଗ୍ରପାଳ ସୁତା ଅଟେ ସେ ବାଳୀ
ରାଜୀବାଳ ରକ୍ଷା ତାହାର ପାଳି
ନାହାନ୍ତି ନୃପତି ସୁତା ଯେ
ଅନ୍ତରେ ଖୋଜିଣ ନଗର ଚାନ୍ଧାର ହୋଇ ଅତି ଉପ୍ପୁକ୍ତା ଯେ-୨୨
ପ୍ରତ୍ୟୁଷ ପ୍ରେମିକା ବହଗ ବାଣୀ
ଯେଉଁଣି ଶୁଣିଲୁ ସେହୁ ସିଦ୍ଧାଣି
ଅନୁସର ଗଲ ବିଜନ ପଥ
ଚତୁରଙ୍ଗୀ ଜାଣେ ପ୍ରେମ ଗୂଢତତ୍ତ୍ୱ
ପ୍ରବେଶିଲ୍ଲି ଅଙ୍ଗ ତହିଁ ଯେ
ସଚେତା କରୁଛନ୍ତି ଅଚେତା ସତୀଙ୍କୁ ଚକିତା ବିସ୍ମୟା ହୋଇ ଯେ-୨୩

× × × ×

ବାନ୍ଧୁଛନ୍ତି କହୁଛନ୍ତି ଅଥୟା ହେଉଛନ୍ତି
ଥରୁଛନ୍ତି ଅପଦନ
ଛଟି ବାସ ଖୋଲି ପଣତେ ପୋଛୁଛନ୍ତି
କେମା ମୁଖ ଘର୍ମବନ । ୨୪
ନିନ୍ଦୁଛନ୍ତି ବନ୍ଦୁଛନ୍ତି ଧାତା ସର୍ଜନାକୁ
ନାରୀ ପୁରୁଷର ପ୍ରୀତି
ବିଖାକୁଛନ୍ତି ଭାବୁଛନ୍ତି କାନ୍ତ କେଉଁଣେ ଗଲେ
କପର ହେଲ ଏ ସ୍ଥିତି । ୨୫

ବିବିଧ ବିଳାସ ସାମଗ୍ରୀ ଶୋଭିତ
କ୍ଷେତରେ ନଥିଲେ କଦା
ବର୍ଣ୍ଣିକାଙ୍କ ବନ ବନ୍ଧୁର ଶୈଳକୁ
ଭରି ଗଲ୍ଲକ ଝଣ୍ଡିଏ । ୨୬
ବାସ ଜଳହଂସ ସ୍ଵର୍ଣ୍ଣ ହଂସକୁ
ଦେଖୁ ଥିଲ ହତାଦରେ ।
ଚର୍ମ ଅବଳକୁ ପଲ୍ଲବ ଦାମରେ
ପିଇଲି ଜଳ ଅଦରେ । ୨୭
ଘମ୍ଭ ଧିକାଏ ହୋଇଲେ ଅନ୍ତର
ଜଟିଆନ୍ତି ସଦା ଦାସୀ
ଏ ଦୁଃଖ ହିନା ତୋ ଅପେ ଅରକାଲ
ଭବ ମୋହରେ ଅବଶ୍ୟାସୀ । ୨୮
ଥାଅନ୍ତି ଯେବେ ମୁଁ ପାଶରେ ଭୃଙ୍ଗର
ଘଟି ନ ଥାନ୍ତା ଏ ଦଶା
ଯେତେ ଏଁାର ଦେଖ ତାର ଶୀର ଛାଟି
ଲୁହାଇ ଥାଅନ୍ତି ରସା । ୨୯
ନାନାଦ ଭୂଷଣ ଚେଞ୍ଚା ବନ୍ଧାତପେ
ଗୃହମା କେଲିରେ ମନ
ନମାନିଲ ଧନ ! କବଲ ଲଗିଲ
କଣ୍ଟା ଗୁଳ୍ମ କୁଞ୍ଜ ବନ । ୩୦
ପ୍ରକୃତ ରଞ୍ଜନେ ଯଦ ମନହେଲ
ସୁକେଶୀ ସଙ୍ଗ ଲଳନା
ସଙ୍ଗୀ ଗହଳରେ ବଟେ ଅସିବାକୁ
କହୁଥିଲ କାଏ ମନା । ୩୧

ଥିଲେ କାନ୍ତ ସଙ୍ଗେ   କେଣେ ଘୁଞ୍ଚିଗଲେ
କାନ୍ତାର ଦେଖି ଏ ଗତି
ଝଟିବକ୍ଷ ଶେଖର   କୋମଳ ହୃଦୟେ
ଦୟା ପୂର୍ଣ୍ଣ ତାଙ୍କ ମତି । ୩୨
ସୌଜନ୍ୟ ମଣ୍ଡଳେ   ଉଦାର ହୃଦୟ
ସଙ୍ଗା ନାହିଁ ତାଙ୍କ ପର
ପ୍ରାଣାଧିକା ପ୍ରିୟା   ପ୍ରମଦା ବତ୍ସଳେ
ଘୁଞ୍ଚିଗଲେ କେଉଁ ପର । ୩୩
କଣାପାଏ ତାଙ୍କୁ   ଘଟିଛି ବିପଦ
ନାହାନ୍ତି ଏ ବନ ଦେଶେ
ଥିଲେ କେବେ ସେହୁ   ନପାରନ୍ତେ ସହୁ
ପ୍ରିୟାର ଏ ଦଶା ଲେଶେ । ୩୪
କି କରିବି ମୁହିଁ   ବୁଦ୍ଧି ନଆସଇ
ପାଖେ ମୋର କେହି ନାହିଁ
ଏତେ କହୁ ଧନ୍ୟା   ଲଗିଲା ଚେଷ୍ଟାରେ
କେମା ସଚେତନ ପାଇଁ । ୩୫
ଝରୁ ଜଳ ଅଣି   ପୋଛି ଦେଇ ମୁଖ
ଶାଉଁଳିଲା ଚନ୍ଦନ
କନକ ଅଙ୍ଗକୁ   କରିଲା ଶୀତଳ
ଧରି ପଲ୍ଲବ ବ୍ୟଜନ । ୩୬
ସଖୀ ସେବା ଲଭି   ଟିକେ ଟିକେ ଯଣେ
ଅନାଉ ଥାଏ ପ୍ରମଦା
ଏହା ଦେଖି ମୁଦେ   କୋଳେ ଅଣୁଥାଏ
ସୁଚତୁରୀ ପ୍ରିୟମ୍ବଦା । ୩୭

ସଚେତା ହୋଇବେ    କେମାମଣି ନଷ୍ଟେ
ଭରସୁ ଥାଏ ସେ ମନେ
ଘୋର ନିଦାଘରେ    ଅଣା ଦାଏ ଯେବେହୁ
ଷୀଣ ସୌଦାମିନୀ ଘଟନ । ୩୮

ରୋମାଞ୍ଚିତ ହୋଇ    କଅଁଳ ଶ୍ରୀଅଙ୍ଗ
ହଲିଗଲେ କର ପଦ
ମଣେ ପ୍ରିୟମ୍ବଦା    ବନ୍ଧୁ ତପ ଫଳିଲ
ଲଭିଲକି ସ୍ୱର୍ଗପଦ । ୩୯

ଏ ସମୟେ ଥାଇଁ    ପ୍ରବେଶ ହୋଇଲେ
ସଖୀ ମଳୟା ବାସନ୍ତୀ
ଦେଖିଲେ ସଙ୍ଗିନୀ    କୋଳେ ରାଜସୁତା
ଅଚେତା ହୋଇ ଅଛନ୍ତି । ୪୦

ଚୋବନଦ ଶାଭ    ଗଣ୍ଡ ସଜରଭ
ଧରନ୍ତି ପାଟଳୀ ବର୍ଣ୍ଣ
କେବେ ଗୃହେଁ କେବେ ଅଧେ ମୁଦେ ଡୋଳା
କୋଳରେ କର ଶୟନ । ୪୧

ବୃନ୍ତ ଚ୍ୟୁତ ଶ୍ୱେତ    ଜବା ଫୁଲ ପର
ସଖୀ କୋଳେ ଦଶେ ବାଳୀ
ନିଶାନ୍ତେ ବାରୁଣୀ- କୋଳେ ଦେଖାଯାନ୍ତି
ଯେପରି ସୁଧାଂଶୁ ମାଳୀ । ୪୨

X    X    X    X

ଷ୍ଟେ କପାଦ ସ୍ଥଳେ    କଶି ଷୋଭ ମନେ
ଭାବଇ ଅନ ଉପମା

ସିନ୍ଧୁ ସୁତ ବାମା    କୋଳେ ଧରି ହରି
ଶୋଇଛନ୍ତି କିବା ରମା । ୮୩
ବିପିନେ ବିଶାଖା    ବୋଲେ ଅଳିଗଣ
ମଣ୍ଡିୟ ରାସେଶ୍ୱରୀ ରାଧା
କୃଷ୍ଣ ରସ ନିଧି    ସନ୍ନିଧି ଆଶାରେ
ଭୋଗନ୍ତି ବିରହ ବାଧା । ୮୪
ମନେ ପଡ଼େ ପୁଣି    ଅଶୋକ ବନରେ
ଏ ଅଟେ ସୀତା ସୁନ୍ଦରୀ
ଭକ୍ତା ସହଚରୀ    ସୁରମା ଚତୁରୀ
ବସିଛନ୍ତି କୋଳେ ଧରି । ୮୫
ରଙ୍ଗିମା ଅଧର    ଶୁଖି ଯାଇଅଛି
ବାସୀ ଗୋଲାପର ପରି
କୁଟିଳ କୁନ୍ତଳ    ଟେଢ଼ା ଟିକି ଲେଟି
ପଡ଼ିଛି ପୃଷ୍ଠ ଉପରି । ୮୬
ଗଣ୍ଡ ଭେଦ ଲୁହ    ଝରି ପଡ଼ୁ ଅଛି
ଉରଦେଶେ ଝରି ଝରି
ଶିଶିର ପ୍ରଭାତେ    ପଲ୍ଲବ ଅଗରୁ
ପଡଇ ଯେସନେ ନୀହାର । ୮୭
ଝଲସି ଯାଇଛି    ଝଟକ ଶରୀର
ଫୁଲ ଝରା ବର୍ଣ୍ଣ ଦ୍ୟୁତି
ଦେଖା ଯାଉଅଛି    ପାଚି ଝଡ଼ି ଥିବା-
ଶୁଷ୍କ ନାରଙ୍ଗୀ ଆକୃତି । ୮୮
ବେଳେ ବେଳେ କମ୍ପି    ଚମକି ଉଠଇ
ଜ୍ୱର ଗ୍ରସ୍ତ ରୋଗୀ ପରି

ଏହା ଦେଖି ସଖୀ      ଅଜଡ଼ାଇ ଅଙ୍କେ
ଶିର ଲଦ୍ଧ ଉଷେଯର । ୪୯
ତାହା ପରେ ଯାଇଁ      ପ୍ରବେଶିଲେ ତହିଁ
ମଞ୍ଜୁଳା, ମାଧବୀ ବେନି
ଦ୍ରୁତ୍ୟେଷ ସ୍ନାହାନ      କୁଙ୍କୁମ ଚନ୍ଦନ
ବାସ ତୈଳମାନ ଦେଲେ । ୫୦
ବିଳମ୍ବ ନକରି      ସବୁ ସୁଚତୁରୀ
ବୋଲି ଦେଲେ ଅପଘନେ
ପଲ୍ଲବ ଶେଯରେ      ଶୁଆଇ ଯତନେ
ବଞ୍ଚିଲେ ପୁଷ୍ପ ବ୍ୟଜନେ । ୫୧
କିଛିକ୍ଷଣ ପରେ      ଅଳ୍ପେ ଦେଖା ଗଲା
ଜବାଧବୀର ଚେତନା
ପରିଶ୍ରମ ସାର୍ଥ      ମଣି ସଙ୍ଗିନୀଏ
ହେଲେ ଟିକେ ହୃଷ୍ଟମନା । ୫୨
କ୍ରମେ ରାଜସୁତା      ଚାହିଁ ସଙ୍ଗିନୀଙ୍କୁ
ଭାଷା ରଚେ କ୍ଷୀଣ ରବେ
ଜାଣିବାକୁ ସବୁ-      କଥା, ବ୍ୟସ୍ତ ହେଲେ
ତହୁଁ ସଜନୀ ସରବେ । ୫୩
ଯାଚିଲେ ସଖୀଏ      ଖାଇବାକୁ କିଛି
ରୁଚିକର ପକ୍ୱଫଳ
ନ ଖାଇଲା ଧନୀ      ବସାଇଲେ ପାଶେ
ପିଅଇ ଅଳପ ଜଳ । ୫୪
ପୁଚ୍ଛିଲେ ସଖୀଏ      କୁହ କ୍ଷେମାମଣି
ସକଳ ଦୁଃଖ ବୃତ୍ତାନ୍ତ

ଏ ଘୋର ଲକ୍ଷଣ     କିଏ ଅଣି ଦେଲା
କେଉଁଣେ ଗଲେ ପ୍ରାଣ କାନ୍ତ ?
ଖୋଜିଲି ତୁମ୍ଭଙ୍କୁ     ଏ ଘରେ ସେ ଘରେ
ଏ ଠାବେ ସେ ଠାବେ ଯାଇ
ଅସ୍ତ ବ୍ୟସ୍ତ ହୋଇ     ଯେତେ ସନ୍ଧାନିଲି
କେଉଁଠି ମାଇଲି ନାହିଁ । ୫୬
ଏ ପୁରେ ସେ ପୁରେ     ନ ପାଇଲି ଯହୁଁ
ଏ ଉଦ୍ୟାନ ସେ ଉଦ୍ୟାନ
ଧାଇଁ ଅଇଲି ଯେ     ଏଠାକୁ ସଙ୍କଟ !
ହେଉ ଜଣା ଅବସାନ । ୫୭
ଠାବେ ଠାବେ ଖୋଜି     ନପାଇ ତୁମ୍ଭଙ୍କୁ
ପ୍ରମୋଦ ବନେ ସଦନେ
ପଥ ଅନୁସରି     ବହୁ କଷ୍ଟେ ଅଛି-
ପାଇଲି ଏହି କାନନେ । ୫୮
ଜ୍ଞାନହରା ହୋଇ     ଏଥେ ଶୋଇଥିଲି
ସଞ୍ଜ୍ଞା ଦାନ କରାଇଲି
ଖଣ୍ଡ କରୁ ଧନ     ମିଳିଲା ପରାଏ
ତୁମ୍ଭଙ୍କୁ ଖୋଜି ପାଇଲି । ୫୯
ଲୁହ ଶୋଭନରେ     ସକଳ ଘଟଣା
ସନ୍ଦେହ କରାଅ ଦୂର
ଦେଲା କେ ଏ ଦୁଃଖ     ନର କି ରାକ୍ଷସ
କିନ୍ନର କି ଅବା ସୁର ? ୬୦
ଜାଣିଥିଲି ପରା     ଇନ୍ଦ୍ରଜାଲ ବିଦ୍ୟା
ଖେଚରୀ, ସାଧନା ଆଦ

ନିପୁରେ କାହାର ଅଛି ଯେ ଶକତ
ହୋଇଲ ତୁମ୍ଭ ଅବାଧୀ । ୬୧
ଅପଲକ ନୟନ ଗୃହୁ ଚୁହାଣୀର
ମୋହନ- ବଶୀକରଣ
ସ୍ୱଜଣ ହେଲକି- ନାହିଁ ନଥା ବେଳେ
କବା ହେଲ ଅକାରଣ । ୬୨
ଗାଗ ସ୍ୱାବ ବୋଲି କୁତୁକଣା କୁଳେ
ପଡୁଥିଲ ଯେ ଚହଲ
ପଚ୍ଚରଲେ କେହୁ କି କହିବୁ ତାଙ୍କୁ
ଏଣିକି ସଖୀ ସହଳ ? ୬୩



## ଚେତନା ଲଭ ପରେ ଅନଙ୍ଗ ମଞ୍ଜରୀଙ୍କର ବିଷାଦ ବର୍ଣ୍ଣନା ଓ ପୁନଶ୍ଚ ଅଚେତନା

(ସ୍ୱର:—କଳହଂସ କେଦାର)

ହେମା ବୋଇଲେ ଶୁଣ- ଶୁଣ ମୋ ବାଣୀ
ପ୍ରେମ ସମ୍ପଦ କାତ ନିରୁ କାହାଣୀ
ଭର୍ମ ଲଗାବ ମୋର ନଥିଲ କାଣ୍ଡି
ସେ ବର୍ମ ସଙ୍କାଇଲ ଏଠାରେ ଅଣ୍ଡି । ୧

ଭାବିଥିଲି ମୁଁ କହୁ · ଭାଳି ମୋ ମନେ
ଏକାନ୍ତେ ବିଳସିବି ବିଜନ ବନେ
ତେଣୁ ଏସ ଭାବ କରି- ବାକୁ ପୂରଣ
ନିଶିଥ ଭିତରେ ସଖି ! ବଳିଲି ମନ ! ୨
ବିଧିଙ୍କୁ ଦୋଷ ଦେବା ଅଟଇ ଅବିଧି
ମୂର୍ତ୍ତିର ସ୍ରଷ୍ଟା ସେହି କରୁଣା ନିଧି
ତାଙ୍କୁ ତ ଦୋଷଦେବି ନାହିଁ ମୁଁ ତିଳେ
ମୋ କର୍ମଯାକ ଏବେ ଶୁଣ ସୁଶୀଳେ । ୩
ନବୀନ ଶାନ୍ତ ବାସ କାବେରୀ କୂଳେ
କାନ୍ତ ସଙ୍ଗେ ତ ଥିଲି ପ୍ରାସାଦ ଚୂଳେ
ପ୍ରସରୁଥିଲା ମୃଦୁ ମୃଦୁ ପବନ
ସୌରଭ ବାସ ମାନ କୁସୁମ ବନ । ୪
ତରଙ୍ଗ ଦୋଳାୟିତ ଚନ୍ଦ୍ର କିରଣ
କରୁଥିଲା ଅମ୍ଭ ଚିତ୍ତ ହରଣ
କୁଳୁ ନାଦନୀ ସେହି ଲହରୀ ମାଳା
ଭୁଲାଇ ଦେଉଥିଲା ସଂସାର ଜ୍ୱାଳା । ୫
ଅଦୂର କୁଞ୍ଜୁ ଶୁଭି କୁଇଳି ରବ
ବଢ଼ାଉଥିଲା ଚିତ୍ତେ ବିରହ ଭାବ
ଚନ୍ଦ୍ରିକା ଝଲକରେ ଝଲାଇ ରସା
ତଡ଼ାଉଥିଲା ଉରୁ ନୈରାଶ୍ୟ ଦଶା । ୬
ସ୍ୱର ରାଜ୍ୟରେ ମୁହିଁ ନିମଗ୍ନା ହେଲି
ପ୍ରେମ ଦୃଷ୍ଟିରେ ଦେଲି ମନକୁ ପେଲି
କାନ୍ତଙ୍କୁ ମନାଇଲି ମୋହନ ଗୀରେ
ଭ୍ରମଣ କରିବାକୁ କାବେରୀ ତୀରେ । ୭

ମୋର ପ୍ରସ୍ତାବ କାନ୍ତ    କଲେ ସ୍ୱୀକୃତ
ଦ୍ୱିଗୁଣ ଉତ୍ସାହରେ    ହେଲେ ଉନ୍ନତ
ପ୍ରଭାତବଧୂଙ୍କ ଆଗେ    ଥାଅନ୍ତା ଯେବେ
ଅଳିବୃନ୍ଦ ଏଥେ ଆସି    ନଥାନ୍ତୁ ତେବେ । ୮
ଦେଖିଲୁ ପଥେ କେତେ    ରମ୍ୟ ସରସୀ
ସାରସ ସଙ୍ଗେ କ୍ରୀଡ଼ୁ-    ଥିଲେ ସାରସୀ
କେତେ, ପଙ୍କଜ, ନୀଳ,    ଶ୍ୱେତ କୁମୁଦ
ଚନ୍ଦ୍ରଙ୍କ ଗୃହେଁ ହସୁ-    ଥାଅନ୍ତି ମୁଦେ । ୯
ପଦ୍ମ ବନରେ ପକ୍ଷୀ    ଦେଇ ଲମ୍ଫନ
ପକ୍ଷ ବାତରେ କରୁ-    ଥାନ୍ତି କମ୍ପନ
ଦୋହଲୁଥାଏ ନୀଳ    ଶୈବାଳ ଜାଲ
ସୁପ୍ତ ସାରସ ସହ    ବୃନ୍ତ ମୃଣାଳ । ୧୦

× × × ×

ରହିଲା ନାହିଁ ଜ୍ଞାନ    ବିବେକାଧୀନ
ଜାଣି ପାରିଲୁ ନାହିଁ    ନିଶା କି ଦିନ
ଚନ୍ଦ୍ର କିରଣେ ସବୁ    ଥିଲା ଉଜ୍ଜ୍ୱଳ
ଗହନ ବନଶୈଳ    ହିରଣା ଭଳି । ୧୧

× × × ×

ବାହୁଡ଼ି ଯାଇଥିଲେ    ଶୁଭେ ନଗରେ
କାନ୍ତ ସହିତେ, ବୁଡି    ପ୍ରେମ ସାଗରେ
ବର୍ଣ୍ଣି ଥାଅନ୍ତି ବନ    ସୁଷମା କେତେ
ହରଷେ ମଜ୍ଜି ଥାନ୍ତି    ସଜନୀ କେତେ । ୧୨

ଘଷ୍ଟ କୁଳରେ ଜନ୍ମି     ମୁହିଁ ଅଭାଗୀ
ପିତା ବଢ଼ିଲେ କେତେ     ସ୍ନେହ ଟୋଲ୍‌ଟି
ଇଚ୍ଛା ମତରେ ମୁହିଁ     ବାଛିଲି ବର
ଭୋଗ କରିବା ଭାଗ୍ୟ     ନାହିଁ ମୋହର । ୧୩
ମୁଁ ନବ ବିବାହିତା     ନବ ପ୍ରସଙ୍ଗ
ନୂଆ ଛୁଇଁଛି ପୁଣି     ପୁରୁଷ ଅଙ୍ଗ
ନୂଆ ଧନ ଭଣ୍ଡାର     ସକଳ ନୂଆ
ସେଥିରେ ମନ୍ଦ କର୍ମ     ହେଲା ଅଡୁଆ । ୧୪
ସତେକି କାନ୍ତ ମୋର     ଆସିବେ ଫେରି
ସୁଖୀ ହୋଇବି ତାଙ୍କ     ଶ୍ରୀମୁଖ ହେରି
ଦୁଷ୍ଟ କେବେ ତାଙ୍କୁ     ନେଇଛି ଧରି
ସୁସାଧ ନହେଁ ସେଠୁ     ଆସିବା ଫେରି । ୧୫
ଶୁଣିଲେ ପିତା ମାତା     ହେବେ ବିମନା
ବୋଲିବେ ଲଜ୍ଜାହୀନା     ଦୂଷିତା କନ୍ୟା
କିପରି ଦେଖାଇବି     ତାହାଙ୍କୁ ମୁଖ
ଗୃହକୁ ଯିବା ଠାରୁ     ମରଣ ସୁଖ । ୧୬
ଏପରି ଭାବି ଧୀରା     ହେଲା ଅଧୀରା
ଧନ୍ୟା ମୃଗଣୀ ପରି     ହୋଇ ଅସ୍ଥିରା
ଅପ୍ସ ଚକିତା ନେତ୍ରୁ     ବୁହାଏ ନୀର
ଯେଉଁ ପ୍ରାବୃଟେ ନଦୀ     ଲଂଘଇ ତୀର । ୧୭
ଗଣ୍ଡ ଦେଶରେ ଖେଳେ     ଲୋତକ ଧାର
ବକ୍ଷ ମର୍ମରେ କିବା     ତୁଷାର ହାର
ସେ ଅଶ୍ରୁ ବାରି ଲଂଘି     ଜଳକୁ ପଡ଼େ
ଫୁଟନ୍ତ ଫୁଲ ଯେସନ୍ତେ     କାକର ଝଡ଼େ । ୧୮

ହା କାନ୍ତ ବୋଲି ଡାକେ ପ୍ରଳାପ ସ୍ୱରେ
କାହ୍ନା ନଟବର ଛନ୍ଦୁ ମୋତେ ସଙ୍ଗରେ
କର ନାହିଁ ତ ଆଉ ସାରେକ ଦୋଷ
ବହୁଲ କାହ୍ନା ଅର୍ପି- ନାରେ ଏ ବେଷ । ୧୯
ଏତେକ, କହୁ ଖୋସ ନୟନ ଢୋଳା
କୃଷ୍ଣ ବିରହେ ଯେତେହେ କିଶୋରୀ ଭୋଳା
ଚଳ ଅଙ୍ଗ କମେ କମେ ରହିତା
ଦେଖି ସଜନୀ ପୁଞ୍ଜ କହିଲେ ଶନ୍ତା । ୨୦



# ଷଷ୍ଠ ସୋପାନ

## ଭନରୁଚୀଙ୍କର ଆଗମନ ଓ ସଖୀମାନଙ୍କୁ ବାର୍ତ୍ତା ଦାନ ସହ ସାହାଯ୍ୟ

( ରାଗ :— ବଙ୍ଗଳାଶ୍ରୀ )

ଏ ସମୟେ ଅସି          ଅପୂର୍ବ ସୁନ୍ଦରୀ
ବାଳିକା ଗୋଟିଏ ତହିଁ
ପ୍ରବେଶ ହୋଇଲେ          ସଖୀ ସମାଜରେ
ଜେମା ଲଗାଇଛନ୍ତି ଯହିଁ ।୧

ବ୍ୟଥିତା ହୃଦୟା          ଅଧୀରା ମାନସୀ
ସଖୀଙ୍କୁ କହିଲେ ବୋଧି
ବ୍ୟାକୁଳା ନହୁଅ          ପ୍ରକୃତ ଖେଳକୁ
କେହି ନପାରନ୍ତି ରୋଧି ।୨

ସ୍ୱପ୍ନ ସମ ଖେଳ          ସଖା ସଖୀ ମେଳେ
ବାସ୍ତବତା ନାହିଁ କିଛି
ନବରନ୍ତି ଦୁଃଖ          ଭବ କ୍ରୀଡ଼ା ଯେତେକ
ସେ ତତ୍ତ୍ୱ ଯିଏ ଜାଣିଛି ।୩

* ରହସ୍ୟ ସାଗର  ରଙ୍ଗେଶ୍ୱରୀ ଇଚ୍ଛା
ବୁଝିବା ବଡ଼ କଠିନ
କଳ୍ପନା କଳସୀ  କମ୍ପୁଛି ବାସୀ
ସଦା ସେ ଦେବୀ ଅଧୀନ । ୪

× × ×

ଅଶକ୍ତ କୁମାରୀ  ଅଟେ ମୁହିଁ ଜଣେ
ଏ ବଳେ ମୋର ଧିକ୍କାର
ଯେ ବିପଦେ ପଡ଼ି  ଅସହାୟ ହୁଏ
ପାଶେ ମିଳେ ମୁଁ ତାହାର । ୫
ବଡ଼ ସାନ ମିତ  ଛୁଆଁ ବା ଅଛୁଆଁ
ମୋ ଶତ୍ରୁ ସେ ଭାବ ନାହିଁ
କାହାରି ମନରେ  ଦେଇ ନାହିଁ ବ୍ୟଥା
ଜୀବନେ ଥରକ ପାଇଁ । ୬
ଧାତ୍ରୀ ସର୍ଜନାରେ  ଯେତେ ସବୁ ଅଛି
ମଣେ ମୁଁ ସବୁ ନିଜର
ସକଳ ଜୀବଙ୍କୁ  ସମାନ ମଣେ
କେହି ନାହିଁ ମୋର ପର । ୭
ଦୁର୍ବଳ ସେବା ଆଉ  ସମାଜ ରକ୍ଷଣ
ଅଟଇ ମୋହର କାମ
ବିଶ୍ୱ ପ୍ରେମ ମୋର  ଧରମ ଅଟଇ
ବାସ ମୋ ସକଳ ଧାମ । ୮

* ରହସ୍ୟ ସାଗର, ରଙ୍ଗେଶ୍ୱରୀ—ଏ ଦୁଇଟି ମହାମାୟାଙ୍କର ନାମ ।
( ମା'ଙ୍କର ଆଦେଶ ମତେ )

\+ \+ \+

ତୁମ୍ଭର ଦୁଃଖରେ ମୁଁ ଦୁଃଖିନୀ ହୋଇ
ଆସିଲି ଏଠାକୁ ଧାଇଁ
ଏ ଘଟଣା ଚକ୍ର ବିଚ୍ଛେଦ ବର୍ଣ୍ଣନା
ଆବୃତ୍ତି କରିବା ପାଇଁ । ୯
ତୁମମାନଙ୍କର ଅଛି ଶକ୍ତି ତ ନାହିଁ
କହୁଟେବ କପଟ କଥା
ରହିଯିବ ତୁମ୍ଭ- ମାନଙ୍କ ମନରେ
ବିଷମ ସନ୍ଦେହ ବ୍ୟଥା । ୧୦
ନିଭାଳ କଥା ମୁଁ ଜାଣି ପାରେ ସଖୀ-
କୁଳ ଗୋ ! ଦେବୀ କୃପାରେ
ଇଚ୍ଛା କଲେ ମୁହିଁ ଦେଖିପାରେ ସବୁ
ମୋତେ କେ ଦେଖି ନ ପାରେ । ୧୧
ତୁମ୍ଭ ମାନଙ୍କର ସକଳ ଘଟଣା
ଦେଖିଛି ଏ ବନେ ଲୁଚି
ପରିଚୟ ଅଛି କି ଦେବି ତୁମ୍ଭଙ୍କୁ
ନାମ ମୋର ବନଲକ୍ଷ୍ମୀ । ୧୨

\+ \+ \+ \+

ଅଥୟ ନ ହୋଇ ସଖୀ ଏ ଗୋ ତୁମ୍ଭେ
ଶୁଣ ସେ ଘଟଣାବଳି
ଯାହା ଯାହା ହେଲା ତୁମ୍ଭ ମାନଙ୍କର
ନ ପାରେ ତାହା ବଦଳି । ୧୩
ତୁମ୍ଭ ସଖୀ ମାନେ ଅନଙ୍ଗ ମଞ୍ଜରୀ
ଆସିଲେ ବନ ବାହାରେ

ପ୍ରାଣନାଥ ସଙ୍ଗ                ଅଶେଷ ଅବେଷ୍ଟେ
ଭ୍ରମିଲେ ଚିଲିକା ଧାରେ । ୧୪
ପଥେ ଦେଖି ନାନା                ଗୁଳ୍ମ ଶଙ୍ଖପୁଞ୍ଜ
କୁଞ୍ଜବନ ସର ଶୋଭା
ସ୍ୱଚ୍ଛସିଦ୍ଧ ପ୍ରେମେ                ରମଣ ରମଣୀ
ହେଲେ ଭେଟେ ମନ ଲୋଭା । ୧୫
ପ୍ରବେଶିଲେ ଅସି                ଏ ରମ୍ୟ କାନନେ
ମଣ୍ଡପେ ଦେଖି ସୁରମ୍ୟ
ବିଳାସ ମାନସେ                ନିବସିଲେ ତହିଁ
ନ କର ଭୟ ବିଭ୍ରମ । ୧୬
ଓ କହିବ ପ୍ରିୟମ୍ବଦେ !                ବାସନ୍ତୀ ଗୋ !
ମଲୟା, ମାଧବୀ ବାଳୀ
ସୁଧାଂଶୁ ଶଙ୍କାରେ                ସୁଧାମୟ ଜ୍ୟୋସ୍ନା
ଦେଉଥାନ୍ତି ବନେ ଢାଳି । ୧୭
ସେହି ସମୟରେ                ଦଇବ ଯୋଗକୁ
ସେ ବିଜନ ନିଶୀଥରେ
ଆସିଲେ ସ୍ୱରଗୁ                କିନ୍ନର କିନ୍ନରୀ
ଚିତ୍ରସେନର ରଥରେ । ୧୮
କାହାରକୁ କେହି                ସୁନ୍ଦର ପଣରେ
ନୁହନ୍ତି ଟିକିଏ ଊଣା
ନିତ୍ୟ ନୂତନା ସେ                ଅହନ୍ତ ସଭଏଁ
ପୀରତି ରସ ପୂର୍ଣ୍ଣା । ୧୯
ହଜି ପାରନ୍ତି ସେ                ପ୍ରତ୍ୟେକ ପ୍ରତ୍ୟକ୍ଷେ
ଯଉଙ୍କ ସଂପତ ଲକ୍ଷ

କି କହିବ ସଖି ! ତାଙ୍କ ରୂପ ଗୁଣ
ସକଳେ ମଦନାବତୀ । ୨୦
ଥିଲେ ସଙ୍ଗତରେ ଉର୍ବଶୀ ସହିତ
ତିଲୋତ୍ତମା ପ୍ରେମ ଲେନ୍ତି
ଶିବ ମନୋହାରୀ ମେନକା ରୂପସୀ
ଚିତ୍ରଲେଖା ଅନୁପମାରୁ । ୨୧
ଘୃତାଚୀ ମାନିନୀ କଟିଯାରେ ଯେହ୍ନୁ
ଦେବର୍ଷି ମହର୍ଷି ଧ୍ୟାନ
ଅପିଥିଲେ ସେହି ରମ୍ଭା ମୃଦୁହାସୀ
କରିବାକୁ ବୀଣା ତାନ । ୨୨
ଯେଉଁ ମିଶ୍ରକେଶୀ ବେଣୀ ଓଞ୍ଜନାସ
ପ୍ରାଣିରେ ମୋହିତ ସର୍ବ
ସେହି ଦିବ୍ୟ ନାରୀ ଥିଲେ ତାଙ୍କ ସଙ୍ଗେ
ତେଣୁ ଦେଖାଇ ମହା ଗର୍ବେ । ୨୩
ନାଗବଧୂଙ୍କ ମେଳା ଶିଖନ୍ତି ଆଦରେ
ଯାହାଠାରୁ ଦେବକନ୍ୟା
ହସୁଥିଲେ ସେହି ରଥ ଆଗେ ବସି
ମନୋହାରୀ ସୁକନ୍ୟା । ୨୪
ଶାସ୍ତ୍ର ବିଶାରଦା ସଙ୍ଗୀତ କୁଶଳା
ନାନା ରସ ଅନୁପମା
ଫୁଲେମଞ୍ଜା ପାଶେ ଶରଣେ ଥାଆନ୍ତି
ଯେଉଁ ବାମା ତିଳୋତ୍ତମା । ୨୫
ଅମରାବତୀକୁ ଛାଡି ଅସିଥିଲେ
ମର୍ତ୍ତ୍ୟ ବନ ଭ୍ରମିବାକୁ

ମୋହନାନ୍ଦ ବଂଶୀ- କରଣ କୌଶଳ
ଇନ୍ଦ୍ରଜାଲ ଜଣା ତାଙ୍କୁ । ୨୬
ଗନ୍ଧସେନ ମଳ ଧାରିଣୀ ବଂଶୀ
ବଂଶୀପ୍ରିୟା ବାରାଙ୍ଗନା
ନନ୍ଦନ କାନନ ତେଜି ଅସିଥିଲେ
ହୋଇ ଅତି ପ୍ରେମ ମନା । ୨୭
ଘରର ସୁନ୍ଦର ଜାଣ ସୁନ୍ଦରୀ
ପ୍ରେମିକା ପ୍ରମଦା ସେହୁ
କେଳୀ କଳତୃଷ୍ଣା ସୁର ବେଶ୍ୟାକୁଳେ
ଅସିଥିଲେ ସଙ୍ଗେ ସେହୁ । ୨୮
ତାଙ୍କ ନାମ ଅଟେ ସୁକେଶିନୀ ଜଣା-
ଦେବ ମାନବ ଗହଣେ
ମର୍ତ୍ତ୍ୟ ପୁରେ ତାଙ୍କୁ ଜାଣନ୍ତି କେବଳ
ରସିକ, ରସିକା ଗଣେ । ୨୯
କି ବର୍ଣ୍ଣିବ ସଖୀ ତାହାଙ୍କ ସୁଷମା
ତାହା ବର୍ଣ୍ଣନା ଅତୀତ
ନବ ପ୍ରେମ ରସେ ଧ୍ୟାନରେ ଭ୍ରମିଲେ
ଗାଇଣ ଅମର ଗୀତ । ୩୦
କର୍ମ ବଂଧନକୁ ସେହୁ ଚନ୍ଦ୍ରବାରେ,
ଭୁଲୁ ହେମ କାନ୍ତ ବୋଲେ
ଖେଳୁଥିଲେ ଦୋଳୀ ଶିଅଳୀ ଲତାରେ
ଏହୁ ଲଳାସ୍ପୃହ ବୋଲେ । ୩୧
ତାହାପରେ ସେହୁ ସୁନ୍ଦର ମଣ୍ଡପେ
ଅଭେହଲେ ପ୍ରେମେ ଯାଇଁ

ଅନଙ୍ଗ ମଞ୍ଜରୀ          ଗାଇଲେ ସଙ୍ଗୀତ
ଯେ ସ୍ୱର ସ୍ୱରଗେ ନାହିଁ । ୩୨

× + × + ×

ଦେବବାଳା ମାନେ          ଭ୍ରମୁଥିଲେ ବନେ
ଶୁଣିଲେ ସେ ମୃଦୁ ସ୍ୱର
ଚମକି ଉଠିଲା          ଚକିତେ ଦେଖିଲେ
ଦେହଁ ଅତି ଚତୁ ହର । ୩୩

ତାପରେ ଗନ୍ଧର୍ବ          ପାଶେ ମେଳ ହେଲେ
ସରବ ସ୍ୱରଗ ବାଳା
ଗୀତ ନୃତ୍ୟ କଲେ          ଚିତ୍ରସେନ ଆଗେ
ପିନ୍ଧାଇ କୁସୁମ ମାଳା । ୩୪

ନୃତ୍ୟର ଅଚଳ          ମନର ଚଥିଲ
ଜାଣି ସେ ଗନ୍ଧର୍ବ ପତି
ସକଳ ଘଟଣା          ବୁଝିଲା ଏ ବନେ
ଅଛନ୍ତି ପ୍ରେମ ଦମ୍ପତି । ୩୫
ତହୁଁ କ୍ରୋଧେ ଆସି          ବିଦ୍ରୋହ ଆଚରି
ସ୍ୱଳାଙ୍କୁ ବସାଇ ରଥେ
ପ୍ରିୟ ପ୍ରିୟା ଗଣ          ଧରିଣ ଚଳିଲା
ଆନନ୍ଦେ ସ୍ୱରର୍ଗ ପଥେ । ୩୬
କାନ୍ତ ଗଲାବେଳେ          ନ ଜାଣଇ ଧନ୍ୟା
ନଥିଲା ତାହାର ଜ୍ଞାନ
କେନ୍ତୁ ନଜାଣଇ          କେଳୀ କେଳାବାଳା
ସେ ଗୂଢ ରହସ୍ୟମାନ । ୩୭

ବନଦୂତୀ କଥା ଶୁଣି ସଖୀକୁଳ
କମଳ ନୟନୁ ଲୁହ-
ବୁହାଇ କହିଲେ, ଦେଖିବା ନଯାଇ
ଅମ୍ଭ ପାଖେ ପାଖେ ଲୁହ । ୩୮
ଦେବୀ କି ମାନବୀ ଜାଣି ନ ପାରୁଛୁ
ଦିବ୍ୟ ଦୃଷ୍ଟି ଦିଅ ଥରେ
କ୍ଷମା ଦେଇ ଦେବ ! ଏ ଅଜନ ତୁମେ
ଦୟା ବହ ହୃଦୟରେ । ୩୯

\+ \+ \+ \+ \+

ପ୍ରଦ୍ୟୁମ୍ନ:—

ଜାଣି ନପାରୁଛି ଦେବତାଙ୍କ କୁହ
କାମ୍ୟା ମର୍ତ୍ତ୍ୟେ ଆସିଥିଲେ
କେଉଁ କର୍ମ ଦଣ୍ଡ ପାଇଁ ଅବା ବନ୍ଧ-
ବହୁଟେତ ତାଙ୍କୁ ପେଶିଲେ । ୪୦
ନୋହିଥିଲେ ତାହା ତେଜି ଚୈତ୍ର ରଥ
ନନ୍ଦନ ପରି କାନନ
ଶୋଭା ପରି ହରି; ଭବ ବିପଣୀରେ
କଲାଇଥାଅନ୍ତେ ମନ ? ୪୧
ପାରିଜାତ ଠାରୁ କଣ କି ସୁନ୍ଦର
ବନ ମଲ୍ଲୀ, ନାଗେଶ୍ୱର ?
ସ୍ୱର୍ଗ ଗଙ୍ଗାଠାରୁ ଅତି କି ମଧୁର-
ପର୍ବତର ଝର ଜଳ । ୪୨
ଅମର ପୁରେ କି ନଥାନ୍ତି ଚନ୍ଦ୍ରମା
ନ ହୁଅଇ ସର୍ବ ସ୍ୱଚ୍ଛ,

କେଉଁ ଗୁଣେ ଅସି    ଦେବେ ବଳସନ୍ତି
ଧରା ଧାମେ ପ୍ରେମେ ମାତି? ୪୩

**ବାସନ୍ତୀ:—**

ଜାଣିଛୁ କି ସଖି !    ସରଗ ପୁରରେ
ନାହିଁ ଲତା କୁଞ୍ଜବନ
ଧରଣୀ ତାଠାରୁ    ପ୍ରକୃତ ରଞ୍ଜନ
ଅଧିକେ କି ଶୋଭନ ? ୪୪
କିବା ବିଜନତା    ନାହିଁ ସେ ଧାମରେ
ନାହିଁ ଶାନ୍ତି ଦେବା ବାସ
ତାହା ନୋହଥିଲେ    କାହିଁ ଦେବ ଦେବୀ
କରନ୍ତେ ମର୍ତ୍ତ୍ୟ ବିଳାସ । ୪୫
ଜାଣୁଛୁ ସଜନୀ    ନ ବୁଝିଣ ଭଣି
ଶବୁଦ କରିବ କିଛି
କଳ୍ପନାରେ ମାନ    ବର୍ଣ୍ଣି ଯାଉଛନ୍ତି
ସ୍ୱରଗ ଶୋଭା ଅକାରୁ । ୪୬

× × × ×

**ମଳୟା:—**

ନାହିଁ କି ବସନ୍ତ    ଅମର ପୁରରେ
ନାହିଁ କି କୋକିଳ ତାନ
ଭଙ୍ଗ ହସ ଭରା    ଭଅଁର ଝଙ୍କାରି
ନିକୁଞ୍ଜ କାନନ ମାନ । ୪୭
ନାହିଁ କି ଦୋଳିତ    ଲତାରେ ଲଳିତ
ପଲ୍ଲବ ସ୍ତବକାବଳି

ସଙ୍ଗ ରଙ୍ଗବତୀ    କୁସୁମ ଘୁମୁରେ
ନବରେ କି ଭୃଙ୍ଗ ଅଳି । ୪୮
ଦୟାଳୁ ଶେଖର    ବୋଲେ ଦେବତାଙ୍କୁ
ମୂର୍ଚ୍ଛନ୍ତି ପଣ୍ଡିତ ହତ
ଯେ ପୁଣି ଟିକିଏ    ବୁଝିନେଲ ନାହିଁ ତ
ପ୍ରେମ ଲୀଳା ନାଗ୍ରୀ ମତ । ୪୯

ମାଧବୀ:—

ଶିଖି ନାହାଁନ୍ତି ସେ    କୃପା ବାରବାର
କୃପାସିନ୍ଧୁ ପୁରେ ଥାଇଁ
ଶିଖିଥିଲେ ତାହା    ପ୍ରିୟା ଅଙ୍କୁ ପ୍ରିୟ
ବିଅନ୍ତେ କି ସେ ଛଡ଼ାଇ । ୫୦
ରସସଙ୍ଗ ପୁରେ    ବାସ ବରଷଣ
ଜାଣି ନାହାନ୍ତି କି ରସ
ବିଯୋଗ, ସମ୍ଭୋଗ    ଚବଳରେ ବିପଦ
ବହିଲେ ମିଳେକି ଯଶ । ୫୧

ପ୍ରଭାବତୀ:—

ନାହିଁ କି ସ୍ୱରଗେ    କୁମୁଦ ବାସାର
ରଙ୍ଗିମା ପଙ୍କଜ ମାନ
ନ ହୁଏ କି ତହିଁ    ଷଡ଼ ଋତୁଙ୍କର
ମଧୁର ସୌରଭ ଦାନ । ୫୨
ନାହିଁ କି ଅମର    ପୁରେ ଅନଙ୍ଗର
ଶାୟକ ଶକ୍ତି ଠାଣି
ଲିଭା ଉଗ୍ର-ଦରେ    ଜୟାଏ ସେ ପୁରେ
ଅଛି ଯା ପ୍ରବାଦ ବାଣୀ । ୫୩

ସୁଖ ସଉଦାଗର ବ୍ୟବସ୍ଥା ନିଧଚ
ସ୍ୱର୍ଗରେ ନାହିଁ ଗୋ ସଖି !
ଦେଖିବେ କିମ୍ପା ନର ମର୍ତ୍ତ୍ୟ ଦେଶେ ସ୍ୱର୍ଗେ
ଯିବା ଆଶା ଥାଏ ରଖି । ୫୪
ଗାଶୁଣ୍ଡି ମୃଦଙ୍ଗ ଢୋଲ୍ ଅମୃତଙ୍କୁ
ବର୍ଣ୍ଣିଛନ୍ତି ଯାହା କବି
କଳ୍ପନାନ୍ତରେ ମାତ୍ର ଲେଖନୀ ଚଳନ୍ତି
ତାରେ ନଦେଖି ସେ ଛବି । ୫୫
କଳ୍ପନାର କଥା ଅନ୍ଧର ବ୍ୟବସ୍ଥା
ସଙ୍ଗରେ ଅଟେ ସମାନ
ତାହା ନୋହିଥିଲେ ଦେବେ କି ଭ୍ରମନ୍ତେ
ଶୁଣି ମର୍ତ୍ତ୍ୟ ସମା ଗାନ । ୫୬

× × × ×

ଏତେ କହୁ ଦେବୀ ବନରୁଚୀ ଅଗ୍ରେ
ବ୍ୟଥିତା ସ୍ୱଜନୀ ତତ
ଶରୀର ଶ୍ୟାମଳ ବ୍ୟଜନ ଚଳିଲେ
ବସି ଶୋମା ଚନ୍ଦ୍ରକତ । ୫୭
କନକ ପ୍ରତିମା ପ୍ରାୟ ସଖୀ କୋଳେ
ଶୋଇ ରହୁଥାଏ ଗୋସ୍ୱୀ
ଏ ପାଖ ସେ ପାଖ ଯେତେ ଢଳିଲେ
ନ ଶୁଣେ ନବ ଭରୋସା । ୫୮
କ୍ଷଣେ କ୍ଷଣେ ମାତ୍ର ଛେଉଥାଏ ତାର
କ୍ଷୀଣ ହୃଦସ୍ପନ୍ଦନ

କିଣା ଯଉଥି.ଏ. ଏତକ ଚିନ୍ତନ୍ତି
ଘଃରେ ଅଛି ଜୀବନ । ୫୯
ଜଗି ରହିଥାନ୍ତି ଖେମା ଚଉପାଖେ
ସଜନୀଏ ଦୁଃଖମନେ
ବନରୁଚୀ ତହୁଁ ବୋଧିଲେ ସଖୀଙ୍କୁ
ଥାଅ ସର୍ବେ ଏହି ବନେ । ୬୦
ଯତନେ ସେବୁଥିବ ଖେମା ଶ୍ରୀ ଅଙ୍ଗକୁ
ଯାଉଛି ମୁଁ ସ୍ୱର୍ଗପୁର
ଶଚୀ ଦେବୀ ଆଗେ କହିବି ଏ ମାନ
ଭଜିବି ଏ ଦୁଃଖ ଦୂର । ୬୧
ଏହା କହି ଧନୀ ଖେଚରୀ ସାଧନେ
ମନଚାଳନେ ଗଲେ ଉଡି
ସେ ମାନବ କବି କେଲିନାଁ; ସେ ଶକ୍ତି-
ପଛି ପାଦିବ ଦାଉଡି ? ୬୨
ପ୍ରବେଶିଲେ ଯାଇଁ ଅମରାବତୀରେ
ଶଚୀ ଦେବୀ ଅନ୍ତଃପୁରେ
ପରୀ ବିଦ୍ୟାଧରୀ ନୃତ୍ୟ କରୁଛନ୍ତି
ଦେଖିଲେ ଦେବୀ ସମ୍ମୁଖରେ । ୬୩
ସଙ୍ଗୀତ ବିତାନ ମୃଦୁ ମନ୍ଦ ସ୍ୱନ
ହରଇ ସକଳ ମନ
ପ୍ରଣମିଲେ ବନ- ରୁଚୀ, ଶଚୀ ପଦେ
ବହିଲେ ଦେବୀ ଆସନ । ୬୪
ତ୍ରିପୁରର ଦୂତୀ ପର ପ୍ରୀତେ ମତ-
ଜାଣନ୍ତି ଇନ୍ଦ୍ରଙ୍କ ରାଣୀ

ନୃତ୍ୟ, ଗୀତ, ବାଦ୍ୟ- ତୁହାର ପୁଛିଲେ
ଜଗତ-କୁଶଳ ବାଣୀ । ୭୫
ସୁଯୋଗ ପାଇଣ ଦେବୀ ବନରୂଚୀ
ପ୍ରକାଶିଲେ ମନ କଥା
କହିଲେ ବିନୟେ ଦେବ ! ଦୟା କଲେ
ଘୁଞ୍ଚିବ ମୋ ଶ୍ରମ ବ୍ୟଥା । ୭୬
ଚନ୍ଦ୍ରଦେବ ରାଜକନ୍ୟା ନିପୁରେ ରୂପେ ଧନ୍ୟା
ହରାଇଛନ୍ତି କାନ୍ତ ଧନ
ଧ୍ୟାନରେ ଦେଖି ଦେଖି କୁମ୍ଭକ ପୁରେ ସେବ
ଠିକ ମୁଁ କହୁଛି ବର୍ଣ୍ଣନ
ଚନ୍ଦ୍ରବଂଶ,
କଲେ ଯାହା ଅଚରଣ, କହିଲେ ମୁହିଁ ତ ଶ୍ରବଣ
ରାଜକୁମାରୀ ଯଶ ଫେଡ଼ ହେ ମହାଘୋଷା ଡ଼କାଇ ଆଣି ଚନ୍ଦ୍ରସେନ
ହେ ଅମର ଈଶ୍ୱର ଯାଉଛି ମର୍ତ୍ତ୍ୟପୁର
ଥିବକି ନାହିଁ ତାର ପ୍ରାଣ
ଚଳନ୍ତି ନ ଥିଲ ନାଡ଼ି ଦେଖି ଆସିଛି ଛାଡ଼ି
କରିବ ତାକୁ ପରିତ୍ରାଣ
ଏ ସତ୍ୟ ବାଣୀ,
ପୁଛିଲେ ପାଇବ ତା ଜାଣି, ଉର୍ବଶୀ ମେନା ଧରି ଆଣି
ଥିଲେ ସେମାନେ ସଙ୍ଗେ ସେଦିନ ପ୍ରେମ ରଙ୍ଗେ
ଯମିତ ଦେବୀ ଚୂଡ଼ାମଣି ।



# ସପ୍ତମ ସୋପାନ

## ଅମର ପୁରେ ଦେବସଭା

### ( ଅମିତ୍ରାକ୍ଷର ଛନ୍ଦ )

ଗଣେଶ, ସେନାନୀ, ରୁଦ୍ର, ବସୁ, ବିଭାବସୁ
✱ ଯକ୍ଷ, ରକ୍ଷ, କିନ୍ନରାଦି- ଗନ୍ଧର୍ବ ସମେତ
ଅଷ୍ଟ-ଦିଗପାଳ, ଇନ୍ଦ୍ର, ବରୁଣ, ମରୁତ
ସମବେତ ହୋଇ ସ୍ୱର୍ଗେ କରୁଥିଲେ ସଭା । ୧
କୁବେର ପ୍ରସ୍ତାବ ମତେ ଗୁରୁ ବୃହସ୍ପତି-
ହୋଇଥିଲେ ସଭାପତି ସ୍ନେହ ସହାୟିତେ
ସମର୍ଥନ କରିଥିଲେ ସ୍ୱାହା ବୈଶ୍ୱାନର
ଧନ୍ୱନ୍ତରୀ ଆଗ ଦେଇଥିଲେ କରତାଳି । ୨
କାର୍ଯ୍ୟସୂଚୀ ପରେ ଥିଲା ବହୁତ ପ୍ରସ୍ତାବ
ଅନ୍ୟ ଅଷ୍ଟ ଗ୍ରହ ତାହା ଆଲୋଚନା ପରେ
ସିଦ୍ଧାନ୍ତ ପଞ୍ଜିକା ଥୋଇଥିଲେ ସଭା ମୁଖେ ।
ନିର୍ଦ୍ଦେଶିଲେ ଗୁରୁ ଦେବ ସଭା କାର୍ଯ୍ୟାରମ୍ଭ । ୩

---

✱ଯକ୍ଷ, ରକ୍ଷ, କିନ୍ନର ଏମାନେ ସର୍ବେ ଗନ୍ଧର୍ବ ଜାତୀୟ ମାତ୍ର କର୍ମ ଅନୁସାରେ ନାମ ପ୍ରଭେଦ ।

ପ୍ରଥମେ ଅଚଳଚ୍ୟ ଥିଲା ଦେବ ପ୍ରିୟଭୂମି-
ମର୍ତ୍ତ୍ୟର; ଖବର କାହୁଁ କରନ୍ତେ ବଡ଼ୁର ।
ଯେଉଁ ମର୍ତ୍ତ୍ୟ ଦେବ; ରୂପ; କାଷ୍ଠ ଓ ପାଷାଣେ,
ପ୍ରତିମା କରିଣ ପୂଜା କରନ୍ତି ଭକ୍ତରେ । ୪
ଏ ପ୍ରସ୍ତାବେ, ବଲ୍ଲଭପେଲେ, ଅତ ସଦାଗତ
ଶିଳ୍ପ-କଳା, ଦଳା, କଳାପାହାଡ଼, ଐତିହ,
ମନେ ପଡ଼େ ଆଇଯାଏ ଥିଲେ ସେ ଜୀବନେ
ନଥାନ୍ତା ପ୍ରତିମା ଆଉ ଦେଖିବାକୁ ଭୂମେ । ୫
ଜାଣି ନଥିଲା ସେ କ୍ରୋଧୀ ବ୍ରାହ୍ମଣ ତନୟ
*ରତ୍ନଗିରି ଗର୍ଭେ ଥିଲା ଏତେ ଶିଳ୍ପ କଳା
ଜାଣିଥିଲେ ଖୋଳି ଭାଙ୍ଗି ଥାଆନ୍ତା ତାହାକୁ
ବୁଡ଼ଅନ୍ତା ଉତ୍କଳର ଗୌରବ ସ୍ମାରକ । ୬
ଏହା ଶୁଣି, ଦରସ୍ପିଛେ ଲମ୍ବ ଗ୍ରୀବା ଟେକି
ଅମ୍ଳାନ କୁମାର ଶିଦେ, କଲେ ପ୍ରତିବାଦ ।
ଦେବ ଭୂମି ଏଥେ ନାହିଁ ଅନ୍ୟାୟ ବଡ଼ୁର
ବ୍ରାହ୍ମଣକୁ ଦିଅ ନାହିଁ ମୋ ବଡ଼ୁରେ ଦୋଷ ; ୭
ସନାତନ ଧର୍ମେ ତାକୁ କଲେ ଅଗ୍ରହଣ ।
ଏକ ବ୍ରହ୍ମ, ବେଦ ନାସ୍ତି, ନବୁଝିଲେ କେହି !
ଏବେ କେତେ କଳା, ଦେଶେ କଟୁଛନ୍ତି ନଷ୍ଟ
ତାହାଙ୍କ କଥାତ କେହି ଭାବୁ ନାହିଁ ତଳେ । ୮

---

*ଐତିହ ପ୍ରସିଦ୍ଧ ପ୍ରବାଦ କଥା, ରତ୍ନଗିରି — ଜବଙ୍କ ଜଳ ସ୍ଥାନର ଉତ୍ତରକୁ ମା ! ଇଲ ଦୂର ବଡ଼ୁପା ଓ ବ୍ରାହ୍ମଣୀ ନଦୀ ଛଠାତରେ ।

ଛବି ଦେଖ, ପୃଥିବୀରେ ଅଛି ବହୁ କଳା
ସଙ୍ଗୀତ, ସାହିତ୍ୟ, ନାଟ୍ୟ, ବାଦ୍ୟ, ଚିତ୍ର, ଶିଳ୍ପ
ସବୁ କଳା ଅଙ୍ଗ ଅଜ୍ଞ- ହୁଏ ବିକଳାଙ୍ଗ ।
ଦୁଇ ସିନା କହିଥିଲୁ, ଏକ କଳା ନୁହେଁ । ୯
ସଙ୍ଗୀତ ସାହିତ୍ୟ ଅଙ୍ଗ ଥିଲା କି ପ୍ରକାର ?
କହିଲେଣି ଅଜ୍ଞ, ସେ ମର୍ତ୍ତ୍ୟ କାପର ଆକୃତ !
ଏ କଥାକୁ ଶ୍ରୀ ଗଣେଶ-କଲେ ସମର୍ଥନ
ସାହିତ୍ୟ-କଳାପାହାଡ଼, ହେବ ଅଜ୍ଞ କିଏ ? ୧୦
ତହିଁ ଅନ୍ତେ ବିଦ୍ୟାଧରୀ ଦୁଇ ସଖୀ ମିଳି
ସ୍ୱର୍ଗ ପାରିଜାତ-ଲତାନ୍ତରେ ହେଲେ କଥାବାର୍ତ୍ତା
ସଖୀ ଗୋ ! କୁହନ୍ତି କିଛି ସାହିତ୍ୟ ବିଷୟେ;
କିନ୍ତୁ ମାଡୁଅଛି ଡର, ବେଶୀ କହିବ ପାଇଁ । ୧୧

× × × × ×

ଏ ସମୟେ ସଭା ମଧ୍ୟେ ପ୍ରବେଶିଲା ଆସି
ଅମର ଗୀତିକା ନାମେ-ଦୈନିକ ପତ୍ରିକା ।
ସେ ପତ୍ରିକା ସମ୍ପାଦକ ନାରଦ ଦେବର୍ଷି
ନାରଦୀୟ ପ୍ରନ୍ଥେ; ତହିଁ ଲେଖା ଅଛି ଏହା । ୧୨
"ଚନ୍ଦ୍ରସେନ ଏକ ରାଜ ପୁତ୍ର ମର୍ତ୍ତ୍ୟୁ ଅଣି
ଅଟକାଇଛନ୍ତି ତାଙ୍କୁ ନନ୍ଦନ କାନନେ
ତାଙ୍କ ମନୋହାରୀ ଅଷ୍ଟ-ଅଙ୍ଗନେ ବିଷାଦେ;
ସେ ଯୋଗୁ ହୋଇବ ଦେବ ହୁଅ ସାବଧାନ" । ୧୩
ଏ ସମ୍ବାଦ ପାଠକରି, ଇନ୍ଦ୍ର ଅତି କ୍ରୁଦ୍ଧ
ଚନ୍ଦ୍ରସେନ ପାଖରେ ଥିଲେ ହକାରି ତାହାଙ୍କୁ

ପଣ୍ଡୁରବଲ୍ ସବୁ କଥା- ବୁଝିଲେ ସତ୍ୟତା-
ପ୍ରବୋଧି-ଝିଘାଂସି ବହୁ ଦେଲେ ଉପଦେଶ । ୧୪
ଗତ ରଜନ ଶଚୀ ଦେବୀ ଚନ୍ଦ୍ରସେନେ ଡାକ
ନନ୍ଦା ବାକ୍ୟ କହିଥିଲେ-ଯେତେ ଯେତେ ଯାହା
ଅଜ ଗୁରୁ ପିତା ପୁଣି କହିଲେ ସେପର-
ମାନିବାକୁ ବାଧ ହେଲା, ଚନ୍ଦ୍ରସେନ ବୀର । ୧୫



# ମିଳନ

## ଗନ୍ଧର୍ବ ମାନଙ୍କର ଚନ୍ଦ୍ରପ୍ରଭାଙ୍କୁ ମର୍ତ୍ତ୍ୟକୁ ପଠାଇବାର ଆୟୋଜନ

ଅଳଙ୍କାରଃ—(ଅନୁପ୍ରାସ ଓ ଯମକ)

ଗୁରୁ ଉପଦେଶେ ଶଚୀ, ଇନ୍ଦ୍ର ରୋଷେ
ଗନ୍ଧର୍ବେ ହେଲେ ବିଚଳ
ଚଳ ପଦ ପର ଥରଣ ସଭୟେ
ସ୍ମରିଲେ ମର୍ତ୍ତ୍ୟ ଅଞ୍ଚଳ । ୧
ଛଳ ନ କରଣ ସ୍ୱାନ୍ତି ଉହୁବର
ଆଦେଶିଲେ ଚନ୍ଦ୍ରସେନ
ସେ ନବ ଛଇଳା କାନ୍ତକୁ ପ୍ରବୋଧେ
ଖ୍ଯାତ ନେଇ ତା ପାଶେଣ । ୨

ଯାଚଷଣ ଅଚନ୍ତି　　　ମୁକୁଳାଇ ଗାଙ୍କୁ
ଦେହ୍ଲାଦନର କର ସେବା
ସେବାର ନାୟିକା　　　ତୋଷନ୍ତୁ ମାନସ
ନୃତ୍ୟ ଗାନ କରୁ ଦେବା । ୩
ଦେ ବାକ୍ୟ ମଧ୍ୟରେ　　　ଭୁଲାଇ ଦିଅନ୍ତୁ
ପୂର୍ବ ବିଦ୍ବେଷ ମାନ
ମାନ ଦେଜ ସର୍ବେ　　　ଗନ୍ଧର୍ବ ଯାଇଁଣ
ଦିଅନ୍ତୁ ନୃପେ ସମ୍ମାନ । ୪
ମାନବତୀ ଦେବୀ　　　ହେଥିବ ବନେ
ହୋଇଣ ବିବେକ ହର
ହରିବ ପ୍ରାଣ　　　କହି ଗଲେ ଗୁରୁ
ନଖାଇଲେ କାନ୍ତ ପର ? ୫
ପରାମର୍ଶ ଦେଇ　　　ଗନ୍ଧର୍ବ ରାଜନ
ଚଳିଗଲେ ନିଜ ବାସ
ବାସର ଶେଷକୁ　　　ଅନାଇ ରହିଲେ
ସକଳ କିନ୍ନର ଦାସ । ୬

X X X X X

## ( ଧରାଧାମେ )

ଦାସକା ମଣ୍ଡିତା　　　ଖଣ୍ଡିତା ନାୟିକା
ଶୋଇଛନ୍ତି ପଲ୍ଲବ ଶେଯେ-
ସେ ଯେ ଅଜ୍ଞାନ　　　ଲଭିବ ଏ କଥା
କେଉଁ ସଜନୀ ନ ଦେଖିଲେ । ୭

ହେ ଚନ୍ଦ୍ରମା, ଚଭଂକିଣ ଡାକି ବାନ୍ଧୁଛନ୍ତି
ଖାଇଁଲୁ ଅଛନ୍ତି ଅଙ୍ଗ
ଅଙ୍ଗନା ନିକର କମ୍ପୁଛନ୍ତି ପ୍ରିୟେ !
ଛାଡ଼ି ଯିବ ସତେ ସଙ୍ଗ ? ୮

ସଙ୍ଗତ, ରହିତ ଚିତ୍ତ ବିରଚିଲ
କାନ୍ତ ସଙ୍ଗେ ଆସି ବନ
ବନଜ ନୟନା ! ଥିଲେ ଆମ୍ଭ ସଙ୍ଗେ
ଘଟି ନଥାନ୍ତା ଏସନ । ୯

ସନମତ ଭାବେନ୍ତି ଭରଇ ଅଣିଲ
ଆମ୍ଭଙ୍କୁ ଗୋପନ କରି
କରୀନ୍ଦ୍ର ଗମନା ! ତବ ବିହୁନରେ
ନ ପାରିବୁ ପ୍ରାଣ ଧରି । ୧୦

ଧରଣୀ ମଧ୍ୟରେ ନାହିଁ ଅଉ କେହି
ତୁମ୍ଭ କାନ୍ତ ପରି ବୀର
ବିରଳତ, ବୀର- କୁଳେ ତୁମ୍ଭ ପରି
ସମରେ ମାରନ୍ତି ତୀର । ୧୧

ତୀରବନେ ମୃତଦ୍ୱାରେ ଦେଖି ଅଛୁ
ଶର ତୁଳନା ତୁମର
ମରି ଲେଟି ଯାନ୍ତି ଯାହାକୁ ଯେ ମାର
ଲକ୍ଷ କରି ଧନୁ ଧରି । ୧୨

ଧରି ନ ପାରିବ ମାର-ଶର, ତବ
ଛାମୁରେ ହେବ ସଜ୍ଜିତ
କାତର ନ ହେଁତ ଏହା ଜେମାମଣି !
ଜାଣେ ଅମ୍ଭ ହଲେଖିତ । ୧୩

କି ତପ କରିଲ  କି ଭୂମା ହୋଇଲ
କେଉଁ ଘଟେଣ କେଉଁ ଯିବେ
ଯାତେବଶୁଣି ! ତୁମ୍ଭ  କର୍ମେ ଏହା ଥିଲ
ଦେଖିଲ ଏ ନେତ୍ରେ ଅନ୍ତେ । ୧୪
ଅନ୍ତେ ଅନ୍ତରଙ୍ଗ  ପ୍ରାଣେଟି ଛିଡ଼ୁ
ଆଣେ କି ଯିବ ଭାହାର
ହାର ଗର୍ବ ସଦା  ଧରିଥିଲ ଅନ୍ତେ
ଅଛୁ ସେଠେ ସଶୀବାର ! ୧୫

+ + + + +

ବେଣୀ ସ୍ୱନ ବଟେନ  କଟିଲଣି ଆସି
ପୁଟେର ସବେ ଖୋଜିବେନ
ବେଣୀଯୁଗ ସ୍ପର୍ଶ  ଜାଣିଣ ଅନ୍ତର
ନୃପ ଦୂତ ପେଶିବେନ । ୧୬
ବାସର ତୃଷ୍ଣାଯ୍ୱ  ଅଟଇ ଚପ ଆଜ
ତୁମ୍ଭର ବନ ନିବାସ
ବାସନ୍ତୀ ଚନ୍ଦ୍ରିକା  ବଚ୍ଛୋହରେ ଆସି
ହୋଇଲ ବିପଦ ବାସ । ୧୭
ସାରସ ଲପଟେନ !  ସାଜ କରିଥିଲ
ହୋଇଲ ଏଥୁ ଅପାର
ଶାରଦ ସର୍ବସ୍ୱ  ପାଲଟିଣ ଗଲ
ଭାଗ୍ୟକୁ ଡମ ନିଶାର । ୧୮
ସଜଣ କୁଳଙ୍କୁ-  ବନ୍ଧୁ ନାହିଁ ଜଣେ
ହେଉଛି ପ୍ରତ୍ୟାଣ ସଙ୍ଗ

ସଞ୍ଜି ପାରିଜାତ- ଲୋଚନା ! ବ୍ୟାଧିକୁ
କାନ୍ତି ସିନା ଭେଷଜ । ୧୯

\+ + + +

ଦରଞ୍ଚେରେ ଅଙ୍ଗ ଶ୍ୟାମଳୁ ଥାଅନ୍ତି
କ୍ଷୁଧାବେଦ ହୋଇ କାତର
ତରଙ୍ଗ ନୟନା ଆଶା ରଖିଥାନ୍ତି
ନେରୁଟିଙ୍କୁ ମାତର । ୨୦

\+ + + +

ଏ ସମସ୍ତେ ଭାନୁ ଅସ୍ତ ଶାନୁ କୁଞ୍ଜେ
ବିଶ୍ରାମ ଇଚ୍ଛା କରିଲେ
ବିଶ୍ୱ ଶିଳ୍ପୀ ଗୁରୁ ନବ ତୁଳିକାକୁ
ସଯତେ ତୋଳି ଧରିଲେ । ୨୧
ପଲକେ ଦ୍ୟୁଲୋକ ଭୂଲୋକ ହୋଇଲା
ସୁରମ୍ୟ ରଙ୍ଗ ପ୍ରାଙ୍ଗଣ
ଦିନମଣିଙ୍କର ବିଦାୟ ସଙ୍ଗୀତ
ଗାଇଲେ ବାୟସ ଗଣ । ୨୨
ନିଶା ଅଗଚମ୍ଭି ପ୍ରଦୋଷ ସୁନ୍ଦରୀ
ବେଶ ହୋଇ ଶୁକ୍ଳାମ୍ବରେ
ଗୁରୁ ଚନ୍ଦ୍ରକାର ସୂଚନା ଦର୍ଶାଇ-
ଦେଲେ ଅବନୀ ଅମ୍ବରେ । ୨୩
ମଧୁମୟ, ସ୍ନିଗ୍ଧ ଗୁରୁ ପ୍ରୀତିକର
ରଜତ ବର୍ଣ୍ଣ କିରଣ --

କ୍ରୀଡ଼ା ବନ୍ଦେଲକନ୍ଦେ ବଢ଼ିଲ ଚନ୍ଦ୍ରମା
କଲେ ପଦ ପ୍ରକ୍ଷେପଣ । ୨୪
କୁମୁଦ ତୂଷ୍ଟୀ ହସ ହସି ମୁଖେ
ଗ୍ରହିଲ କାନ୍ତ ବଦନ
ବନ୍ଧୁ ବାନ୍ଧବୀର ଦୁଃଖେ ଈର୍ଷା ବହ୍ନି
କ୍ଷୀଣ ହେଲା ପଦ୍ମ ମନ । ୨୫
ସନ୍ତାନ ଗୌରବ ଲଭେରଣି ଉଦଧି
ପଲ୍ଲବ ତରଙ୍ଗ ମାଳା
ମାଳ ବନାଇଲେ କହେଲେ ବରଷଣ
କାନ୍ତ ସୋହାଗିନୀ ବାଳା । ୨୬

+ + + + +

—:ସ୍ୱରଗ ପୁରେ:—

ଦ୍ୱାଦଶ ମାର୍ତ୍ତଣ୍ଡ ଅନନ୍ତ ବ୍ରହ୍ମାଣ୍ଡ
କରନ୍ତି ପ୍ରତି ପାଳନ
ତେଣେ ସ୍ୱର୍ଗପୁରେ ସ୍ୱରଗ ତପନ
ଗମିଲେ ନିଜ ଭବନ । ୨୭
ଅମର ପୁରରେ ଥାଏ ସ୍ଥାୟୀ ଚନ୍ଦ୍ର
ନହୁଏ ଅନ୍ଧାର ରାତ
ତେଣୁ ସେ ଚନ୍ଦ୍ରମା ଜ୍ୟୋତ୍ସ୍ନା ବତରଣ
ପ୍ରକାଶିଲେ ନିଜ ଗତ । ୨୮
କାନନ, ଭବନ ଅମର ପ୍ରାଙ୍ଗଣ
ହୋଇଲ ସୁରମ୍ୟ ରଙ୍ଗ

ଶୀତେ ଗଲେ ପୁଣି        ବାହାରିଲେ କେତେ
ହେମ ବରନ ବିହଙ୍ଗ । ୨୯
ଭରିଥିବା କର୍ମ        ଘାରୁଥାଏ ବସ୍ତୁ
ଏକାନ୍ତରେ ଶିବସେନ
ଲୁକର୍ମେ ସନ୍ତାପ        କରନ୍ତି ସେପରି
ବୃଦ୍ଧେ ଅନ୍ତିମ ଶେଷେଣ । ୩୦

\+ + ॐ + +

ସ୍ୱରଗ ସୁମନେ        ମଣ୍ଡାଇ ରଥେକ
ଆଣିଲେ ଗନ୍ଧର୍ବମାନେ
ଲୁହାଇଲେ ତାହା        ସମାଦରେ ନେଇ
ଯକ୍ଷପୁତ୍ର ସନ୍ନିଧାନେ । ୩୧
ବୋଇଲେ ହେ ଦେବ !        ଈଚ୍ଛେ ଧର ଏଥେ
ଆଦେଶିଛନ୍ତି ସୁଜନ
ଆଣିଥିଲେ ଯେଉଁ        ଠାକୁରୁ; ଗ୍ରହଣୁ
ତୁମ୍ଭଙ୍କୁ ନେଇ ସେ ଧନ । ୩୨
ଯେନ ଉପହାର        ସ୍ୱର୍ଗ ବାସୀଙ୍କର
ସଦା ସଜ୍ଜ ପୁଷ୍ପ ମାଳା
ଜାତ୍ୟ ତୁମ୍ଭ ମନ        ହରଣ ପାଇଁ କି
ଦେଲୁ ଏହୁ, ଗନ୍ଧ-ବାଳା । ୩୩
ରଖିଥିବ ଏହୁ        କାମ କଳ୍ପତରୁ
କାଞ୍ଚନ ପ୍ରତିମା; ସଙ୍ଗେ
ଯେତେବେଳେ ଯାହା        ଏହାକୁ ମାଗିବ
ଦେବ ଏ ଅଦ୍ଭୁତେ, ରଙ୍ଗେ । ୩୪

ଏହୁ ସ୍ୱର୍ଗ, ପଶ୍ଚି      କିଛି ଧନ ପଠେଇ
ଫେରିବ ସ୍ୱରଗ ପୁଣି
ଯେତେବେଳେ ସ୍ୱଜନ      ନକରିବ ଦୁଃଖ
କ୍ଷଣିକ ପୀରତି-ଝୁରି । ୩୫
ଯେଉଁ ଧନ ସଜା      ଅନ୍ୟାୟୁ ଝଗୁର
କରିବ ଏ ଫୁଲ୍ ମାଳି ·
ନ ରହିବ ଗଲେ      ସ୍ୱରଗ ଫେରିବ
ନହେବ ତା ପାଇଁ ଭଲ । ୩୬
ଯେ ଧନ ଏ ଧରା      ପ୍ରତିମା ଚୁଲାରେ
କରିବ ନୃପତି ଊଣା
ସେଧନ ଏ ନଷ୍ଟେ      ସ୍ୱର୍ଗେ ବାହୁଡ଼ିବ
ନକରି ଅଉ କରୁଣା । ୩୭

× × × × ×

ରଥାରୂଢ଼ ହେଲେ      ଚନ୍ଦ୍ରପ୍ରଭା ହର୍ଷେ
ଅଇଲ ମର୍ତ୍ତ୍ୟକୁ ରଥ
ଦେଖି ବର୍ଣ୍ଣି ପାରିବ      କଳ୍ପନା ଶିରିରେ
ସେ ରମ୍ୟ ଅନନ୍ତ ପଥ । ୩୮
ପଥେ ଝଲେଝଲେ      ନଦୀ ସରୋବର
ପର୍ବତ ଗ୍ରାମ ମଣ୍ଡଳ
ଅତୀବ ସୁନ୍ଦର      ପଶୁ ପକ୍ଷୀ କାହିଁ
କଲରନ୍ତି ଦଳ ଦଳ । ୩୯
ଫଳ ଫୁଲ୍ ଭରା      ଅସଂଖ୍ୟ ଉଦ୍ୟାନ
ଠାବେ ଠାବେ ମନୋହର

ଝୁସରଇ ସଦା          ସୁଗନ୍ଧ ମଳୟ
ହେଉଥାଏ ଚିତ୍ତ ହର । ୪୦
ଭାବୁଥାନ୍ତି ନୃପ          କିଛି ଦିନ ରହି
ଦେଖିବେ ସେ ମୁଖ ଶଶୀ
ଏଣେ ଝାଣୁଥାଏ          ଅନଙ୍ଗ ମଞ୍ଜରୀ
ମର୍ତ୍ତ୍ୟ ବାମା ପ୍ରେମ ଫାଶୀ । ୪୧
କାହିଁକି ଭେଜାଣି          ଭାବିଲେ ନୃପତି
ଅବଧ ନରେନ୍ଦ୍ର କଥା
ସେ କେତେ ବିଜ୍ଞାନୀ          ମହାବୀର ଥିଲେ
ଦଶରଥ ମହାରଥୀ । ୪୨
ତାଙ୍କ ରଥ ଶନି-          ପୁରେ ଯାଇଥିଲା
ଦ୍ୱାଦଶ ସୂର୍ଯ୍ୟ ଉପର
ଆମ୍ଭ ରଥ ମାନ          ଅଛଇ ଦୂରଗ-
ମଙ୍ଗଳ ଚନ୍ଦ୍ର ପାଖର । ୪୩
ଶନି ଉର୍ଦ୍ଧ୍ୱ ପୁରେ          ଗୁରୁ ପୁତ୍ର ପାଇଁ
ଯାଇଥିଲେ କୃଷ୍ଣାର୍ଜୁନ
ତାଙ୍କ ବୀରପଣ          ଯାନ ଅନ୍ୱେଷଣ-
ଭୁଲିଲେ ସର୍ବେ ନାଜନ । ୪୪
ଭାରତ ମାତାର          ଥିଲେତ କୃଷ୍ଣୟ
ଏପରି ଯୋଗ୍ୟ ନନ୍ଦନ
ଆସିବ ସେଦିନ          ହୋଇବେ ଜନମ
ଦେଖାଇବେ ଯୋଗ ଧନ । ୪୫

× × ×

ଏତେ ଦୁଃଖ ଖଞ୍ଚା  ମନ, ମୁଗ୍ଧ ଦେଖି
ଭବି ଚନ୍ଦ୍ର ବଶ୍ୟମନ୍ତ୍ରୀ
ଧନ୍ୟ ଦେବାଙ୍କର  ତୁଳନା ପ୍ରଗତି
କେ ବୁଝିବ ଦେବ ବନ୍ଧୁ ? ୪୬
ହସାଇ ପାରନ୍ତି  ଜୀବଙ୍କୁ ଯେ ଦେବେ
ତେବେ ତ ପାରନ୍ତି କନ୍ଦାଇ
ଦୟା କଲେ ମୁକ୍ତି  ପାରନ୍ତି ସେ ଦେଇ
ପୁଣି ବିମୋହେ ବନ୍ଧାଇ । ୪୭
ରଖିଛନ୍ତି ସବୁ  ପୁରେ ପ୍ରଲୋଭନ
ଯେମନ୍ତେ ଭୁଲିବ ମନ
ଯେଉଁ ପୁରେ ଯିବ  ସେ ପୁରୁ ବିଦାୟ
ନ ଇଚ୍ଛୁ ଏହୁ ଜୀବନ । ୪୮
ମର୍ତ୍ତ୍ୟପୁରେ ଅଛି  ପୁରୁଷ କାମିନୀ
କାଞ୍ଚନ ବିଭୋଗ ଖେଳ
ଧରଣୀ, ତରଣୀ,  ସଉଧ, ବିପଣୀ
ସଖା ସଖୀଙ୍କର ମେଳ । ୪୯
କୁସୁମ କାନନ  ପକ୍ୱ ଫଳମାନ
ସଙ୍ଗୀତ ନୃତ୍ୟ ବିତାନ
ଭୁଲି ରହେ ଜୀବ  ନ ଇଚ୍ଛେ ଯିବାକୁ
ଦେଖି ଏ ସୌରଭ ମାନ । ୫୦

× × ×

ସ୍ୱର୍ଗ ପୁରେ ଅଛି  ଅଜର ଅମର
ଅଶୋକ ମଇକ୍ଷ ପଣ

ପାରିଜାତ ସଙ୍ଗେ ଅଦ୍ଭୁତ କୁସୁମ ସୁନ୍ଦରୀ ଅପ୍ସରୀଗଣ । ୫୧
ସ୍ୱାଧୀନରେ ଏଠେଣି ସେଠେଣି ବିହରନ୍ତି ପରି ବିଦ୍ୟାଧରୀମାନେ
ହରଣ କରନ୍ତି ଅଶାନ୍ତିକ ମନ ଗୀତ ବାଦ୍ୟ ନୃତ୍ୟ ତାନେ । ୫୨
ଗନ୍ଧର୍ବୀ, କିନ୍ନରୀ, ନାଗ ନାରୀମାନେ ଚଳାଇ ଭ୍ରୂଲତା ଠାଣି
ହରି ପାରନ୍ତି ନିଷ୍ଠ ଯତୀନ୍ଦ୍ରର ମନ ରଙ୍ଗାଧରେ କହି ବାଣୀ । ୫୩
ଜ୍ଞାନ, ଭକ୍ତି, ଯୋଗ, ମୁକ୍ତି, ତତ୍ତ୍ୱମାନ ପୂର୍ବ ରହିଅଛି ତହିଁ
ସର୍ବ ଦେବ ଦେବୀ ଚର୍ଚ୍ଚେ ସମାବେଶ ହୁଅନ୍ତି ଯେ ସଦା ତହିଁ । ୫
ଗଙ୍ଗାଧରଙ୍କର ଜଟା ଧୌତ କରି ବହୁଛି ଯେ ଗଙ୍ଗା ଧାର
ନାନା ଜାତି ବର୍ଣ୍ଣ ଲତାପର୍ଣ୍ଣେ ଘେରି ମନ ମୋହେ ତାର ଧାର ।

× × ×

ପିତୃ, ମାତୃ ପୁରେ ହୁଅଇ ନିଶ୍ଚୟ ପୂର୍ବ ପୁରୁଷ ଦର୍ଶନ
ସେମାନଙ୍କ ସ୍ନେହ ଛାଡ଼ି ଆସିବାକୁ କାହାର ବଳିବ ମନ । ୫୬
ଦୀର୍ଘ ବିଚ୍ଛେଦର ମିଳନରେ ମନ ଭୁଲି ଯାଏ ଅନ୍ୟ ପନ୍ଥା
ଛାଡ଼ି ନ ପାରେ ସେ ଗଲା କେଉଁଠାରୁ କହିବ ପୁଣି କି କଥା ।

× × ×

ବୈକୁଣ୍ଠ ପୁରରେ ରହିଛନ୍ତି ନିରତ ନିତ୍ୟ ସର୍ବେଶ୍ୱରୀ ବସ
ସେ ଧାମ ଶୁଣିଲେ ଥରେ ମାତ୍ର କେହି ନ ଇଚ୍ଛିବ ଆନ ବାସ ।
ସେ ନାଦ ଯେ ଯେତେବେଳେ ପ୍ରବେଶୁଛି ଯାଇଁ ଡାକୁଛି ସେ ଜୀବ ପକ୍ଷୀ
ରକ୍ଷାକର ରକ୍ଷାକର ହେ ପରମ କେ ଅଛ କେଉଁଠି ରକ୍ଷୀ । ୫୯

× × ×

ବ୍ରହ୍ମପୁର କଥା କଣା ନାହିଁ ମୋତେ କରନ୍ତୁ କ୍ଷମିବେ ଧ୍ୟାନ
ଗ୍ରହ ଉପଗ୍ରହ ବାରତା ଶୁଣିକ କହୁଛି ନବ ବିଜ୍ଞାନ । ୬୦

ବାୟୁ ମଣ୍ଡଳରେ କେତେ ପୁର ଅଛୁ କହିବ ସେ କଥା କିଏ ?
ଅନନ୍ତ ବିଶ୍ୱର ଐଶ୍ୱର୍ଯ୍ୟ ଜାଣନ୍ତି ସ୍ୱୟଂ ନିର୍ବିକାର ସିଏ । ୬୧
ସକଳ ପୁର ନିବାସୀ ବୃନ୍ଦ, ଯାଙ୍କ ଚରଣ କରି ସ୍ମରଣ
କରି ସ୍ତବେ କେତେ ଛନ୍ଦ ହୃଦେ ଅଙ୍କ କଲି ଏ କାବ୍ୟ ପୂରଣ ।

\+ \+ \+

ଅଷ୍ଟର୍ଥୀ କଥା ଏ ଦେଖିଲେ ସ୍ୱରଗେ ଅନନ୍ଦ ହୋଇଲା ମନ
ମଳିନ ନ ହୁଏ ସଙ୍ଗେ ଫୁଲ ଥାଏ କହିବା ଯାଏ ଚୟନ । ୬୩
ପକ୍ୱ ଫଳମାନ ବୃକ୍ଷରେ ଥାଆନ୍ତି ନ ହୋଇ ଶୁଷ୍କ ବା ବାସି
ଦରକାର ବେଳେ ଗ୍ରହଣ କରନ୍ତି ଆଦରେ ସ୍ୱରଗ ବାସୀ । ୬୪

\+ \+ \+

ଶବ୍ଦମୟ ରଥ ଖସି ଅସୁଥାଏ ମର୍ତ୍ତ୍ୟଲୋକେ ଶୀଘ୍ର ଇନ୍ଦୁ
ବହୁଥାନ୍ତି ଜନରୁଚୀ ତାହା ଦେଖି ଜନ ନେତ୍ରେ ବନ ମଧ୍ୟ ।
କେତେ ଗ୍ରହ ଚନ୍ଦ୍ର ଅତିକ୍ରମ କରି ଦୂର୍ଣ୍ଣିତ ବାୟୁ ମଣ୍ଡଳ
କ୍ରମେ କ୍ରମେ ଦୃଷ୍ଟି ପଥାରୂଢ଼ ହେଲା ଶ୍ୟାମଳ ଭୂଧର ତଳ । ୬୬
ରଜନୀ ପ୍ରଥମ ଯାମେ ପ୍ରବେଶିଲା ସ୍ୟନ୍ଦନ ଘଟଣା ସ୍ଥଳେ
ହର୍ଷ ବିଷାଦର ତରଙ୍ଗ ଲହରୀ ଖେଳିଲା ଯୋଷା ଗହଳେ । ୬୭

—*ସ ମା ପ୍ତ*—



ମୁଦ୍ରାକର—ଶ୍ରୀ ଲୋକନାଥ ଦାସ, ବଳଦେବ ପ୍ରେସ, କେନ୍ଦ୍ରାପଡ଼ା

# କବିଙ୍କର ଅନ୍ୟ ପୁସ୍ତକମାନଙ୍କର ନାମ ଓ ସାହାଯ୍ୟକାରୀମାନଙ୍କର ନାମ

| ପୁସ୍ତକମାନଙ୍କ ନାମ | ମୂଲ୍ୟ | ସାହାଯ୍ୟକାରୀମାନଙ୍କ ନାମ |
|---|---|---|
| ୧ । ନିକୁଞ୍ଜ ମିଳନ | ୫୦। | ନିଜେ |
| ୨ । ଭାବମାଳା | ୫୦।୵ | ଦୁର୍ଗାପ୍ରସନ୍ନ ସାହେବ ଦୋଳଗୋବିନ୍ଦ ମହାନ୍ତି |
| ୩ । ରସ ଲହରୀ | ୫୦୴ | ମହା! ପାଳଲହଡ଼ର ରାଜା ଶ୍ରୀ ଚନ୍ଦ୍ରଭାନୁ ଦେବ (ଅଳି) |
| ୪ । ରଜନୀ | ୫୦୴ | ଶ୍ରୀଯୁକ୍ତ କୁଳମଣି ଚୌଧୁରୀ ଇଟାମୁଣ୍ଡିଆ |
| ୫ । ନୀତିଶିକ୍ଷା ଓ କର୍ମ ସଙ୍ଗୀତ | ୫୦।୵ | ନିଜେ |
| ୬ । ପ୍ରଭାତ କୁସୁମ | ୫୦୵ | ଉତ୍କଳର ପୂର୍ବତନ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ |
| ୭ । ଗୋପ ନାଟକ | ୫୦୵ | ଶ୍ରୀଯୁକ୍ତ ଦୟାନିଧି ଜେନା, କଳେଡ଼ା |
| ୮ । ବ୍ରଜବାଳା | ୫୦୴ | ମହନ୍ତ ମହାରାଜ ଏମାର ମଠ (ଶ୍ରୀ ରାମଚନ୍ଦ୍ର ରାମାନୁଜ ଦାସ) ଓ Sj. R. C. Patra, S. D. O. Kendrapara |
| ୯ । ଛନ୍ଦମାଳିକା ଜଣାଣ | ୫୦।୵ | ଶ୍ରୀଯୁକ୍ତ ଅମରସିଂହ, କଲେକ୍ଟର୍ କଟକ ଓ Sj. A. C. Mahapatra, S. D. O. Kendrapara |
| ୧୦ । ଅବନ ଭଜନ | ୫୦।୵ | ଉତ୍କଳର ପ୍ରଧାନ ମନ୍ତ୍ରୀ ମହାମାନ୍ୟବର ଡକ୍ଟର ଶ୍ରୀ ହରେକୃଷ୍ଣ ମହତାବ |
| ୧୧ । କବିତା କୁମୁଦ | ୫୦।୵ | ଶ୍ରୀ ପୁରନ୍ଦର ସାହୁ, ଏଲକଣା |

ଉକ୍ତ ପୁସ୍ତକମାନଙ୍କ ମଧ୍ୟରୁ ପ୍ରଭାତ କୁସୁମ, ଭାବମାଳା, ରଜନୀ, ନୀତିଶିକ୍ଷା କର୍ମ ସଙ୍ଗୀତ, କବିତା କୁମୁଦ ପ୍ରଭୃତି ଲାଇବ୍ରେରୀ ପାଇଁ ସରକାରୀ ମଞ୍ଜୁରୀ ପ୍ରାପ୍ତ ହୋଇଅଛି ।

କବି ଶ୍ରୀ ଚନ୍ଦ୍ରମଣି ମହାନ୍ତ ( କେନ୍ଦ୍ରାପଡ଼ା ) ଙ୍କର ପ୍ରକାଶ ଉପଯୋଗୀ ପାଣ୍ଡୁଲିପି ମାନଙ୍କର ନାମ :—

୧ ସଙ୍ଗୀତ ନୀଳମଣି
୨ ଭାବ ବିନୋଦ
୩ କିଶୋରୀ ବିରହ
୪ ଭାବ ତରଙ୍ଗ
୫ ଆକାଶ କୁସୁମ
୬ ଜନକ କିଶୋରୀ
୭ ଦେବଦୂତ
୮ ଅବନୀ ଦଶ ଅବତାର
୯ ଅବନୀ ଛପ୍ପାଳିଶା
୧୦ ଜନନୀ ଜଣାଣ
୧୧ କୃଷ୍ଣ କୃପାସିନ୍ଧୁ
୧୨ ମନ୍ତ୍ରମାଳା
୧୩ ଷଡଋତୁ
୧୪ ଖଣ୍ଟି ପଟେ